# ସୋରାବ ଓ ରୁସ୍ତମ

ପ୍ରଣେତା

ଶ୍ରୀଧର ଦାସ, ଏମ. ଏ., ବି. ଏଲ୍.

ଦ୍ୱିତୀୟ ମୁଦ୍ରଣ

ପ୍ରକାଶକ

ଉତ୍କଳସାହିତ୍ୟ ପ୍ରେସ

କାଳୀଗଳି

ପୋ: ଅ: ଚାନ୍ଦିନୀଚୌକ,

କଟକ

୧୯୪୯

ମୂଲ୍ୟ ଛଅ ଅଣା

# ସୂଚନା

ସୋହରାବ ଓ ରୁସ୍ତମଙ୍କର ଅଦ୍ଭୁତ କାହାଣୀ ପ୍ରସିଦ୍ଧ ପାରସିକ କବି ଓ ଐତିହାସିକ ଫିର୍ଦ୍ଦୁସିଙ୍କ ସାହାନାମାରେ ଲିପିବଦ୍ଧ ହୋଇଅଛି ତାହାକୁ ଅବଲମ୍ବନ କରି ବିଖ୍ୟାତ ଇଂରାଜ କବି ଆର୍ଣ୍ଣୋଲ୍ଡ ଇଂରାଜୀ ଭାଷାରେ 'ସୋହ୍ରାବ ଓ ରୁସ୍ତମ' ନାମକ ଖଣ୍ଡକାବ୍ୟ ରଚନା କରିଅଛନ୍ତି ।

ଆର୍ଣ୍ଣୋଲ୍ଡଙ୍କ 'Shorab and Rustum' କୁ ଅବଲମ୍ବନ କରି ଏହି ପୁସ୍ତିକାଟି ଲିଖିତ । ତେଣୁ ମୂଳ କାବ୍ୟର ଏହା ପ୍ରତିଚ୍ଛାୟା ମାତ୍ର । ଏଥିରେ ମୂଳଲେଖାର ସରସତା ଆଶା କରାଯାଇ ନ ପାରେ । ମାତ୍ର ପାର୍ସି ଓ ଇଂରାଜୀ-ଅନଭିଜ୍ଞ ଓଡ଼ିଆ ପାଠକମାନଙ୍କୁ କିଞ୍ଚିତ୍ ଆନନ୍ଦ ଦାନ କରି ପାରିଲେ ପୁସ୍ତିକାର ଉଦ୍ଦେଶ୍ୟ ସଫଳ ହୋଇଅଛି ବୋଲି ମନେ କରିବି । ଇତି ।

ବିନୀତ
ଲେଖକ

•

# ଉତ୍ସର୍ଗ

ଯେଉଁ 'ରାଧାକୃଷ୍ଣ'ର ରୋଗଶଯ୍ୟା ନିକଟରେ
ଏହି ପୁସ୍ତିକାର ଆରମ୍ଭ ଓ ଯାହାର
ବିୟୋଗ ସଙ୍ଗେ ଏହାର ପରିସମାପ୍ତି
ଘଟିଥିଲା, ତାହାର ମଧୁମୟ
ନାମରେ ଉତ୍ସୃଷ୍ଟ ।

# ସୋରାବ ଓ ରୁସ୍ତମ

ପ୍ଲାବିତ କୁହେଳି ବ୍ୟାପି ରହିଛି ପୂରବେ
କୁହେଳିକାରାଶି ପୂର୍ଣ୍ଣ ଅକ୍ଷ ନଦୀଗର୍ଭେ(୧)
ତାତାର ଶିବିରରାଜି ରାଜେ ତାର ତୀରେ,
ନୀରବେ ଶୟାନ ସର୍ବେ ନିଦ୍ରାଦେବୀକୋଳେ ।
ଏକାକୀ ସୋରାବ ଛନ୍ତି ଶୟନେ ଜାଗ୍ରତ,
ଉନ୍ନିଦ୍ରେ ରଜନୀ ତାଙ୍କ ହୋଇଛି ବିଗତ ।
ଉଷାର ଧୂସର ରେଖା ପଡ଼ନ୍ତେ ଶିବିରେ,
ଶଯ୍ୟା ତେଜି ବୀରଭୂଷା ନହିଲେ ଶରୀରେ ।
କଟିରେ ବାନ୍ଧିଲେ ତୀକ୍ଷ୍ଣ ଧାତୁ ତରବାର,
ଅଶ୍ୱାରୋହୀ ଆଚ୍ଛାଦନ ପିନ୍ଧିଲେ ଆବର ।
ତେଜି ବସ୍ତ୍ରାବାସ ପଥେ ଶୀତ ଅନ୍ଧକାରେ,
ଚଳିଲେ ପିରାନଙ୍କର ଅଦୂର ଶିବିରେ ।

ପାଶେ ରାଜେ ଦୀର୍ଘ କୃଷ୍ଣ ତାତାର ଶିବିର,
ମଧୁଚକ୍ରସମ ତୀରେ ଅକ୍ଷ ତଟିନୀର,
ନିଦାଘେ ପାମିର ବକ୍ଷ ହୋଇ ବିଗଳିତ
ହିମରାଶି କରେ ଯାର ବକ୍ଷ ତରଙ୍ଗିତ ।

(୧) The Oxus

ତାତାର ଶିବିର ପ୍ରାନ୍ତେ ତହୁଁ ଅଳ୍ପ ଦୂରେ
କ୍ଷୁଦ୍ରଗିରି ପାଶେ ଘର ମିଳଇଲେ ଅଚିରେ ।
ପୂର୍ବେ ଏହି ଗିରି ଶୃଙ୍ଗ ପରେ ବୀରଗଣ
କରିଥିଲେ ମୃତ୍ତିକାରି ଦୁର୍ଗ ବିରଚନ,
ମୁକୁଟ ସମାନ ଥିଲା ତାହା ବିରାଜିତ;
କାଳବଶେ ଏବେ ତାହା ଭୂମିରେ ପତିତ ।
ଏବେ ତହିଁ ରଚିଛନ୍ତି ତାତାରୀୟ ବୀରେ
ପିରାନଙ୍କ ବସ୍ତ୍ରାବାସ ଅତ୍ୟନ୍ତ ରୁଚିରେ ।
କାଷ୍ଠରି ଗମ୍ବୁଜ ପୁଣି କମ୍ବଳେ ଆବୃତ ।
ସୋରାବ ପ୍ରବେଶି ଗୃହେ, ହେଲେ ଉପଗତ
ବିସ୍ତୀର୍ଣ୍ଣ ଆବାସେ; ଘନ ମସୃଣ କମ୍ବଳ
ସୋରାବ ସଧୀର ଭାବ ହେଲେ ତଥିପର ।
ଦେଖିଲେ ପିରାନେ ଲୌହମୟ ଆବରଣେ
ଆଚ୍ଛାଦଣ ଅସଧନ, ଶାୟିତ ଶୟନେ ।
ପାର୍ଶ୍ୱେ ରହିଥିଲ ତାଙ୍କ ଅସ୍ତ୍ରେ ସ୍ତବଶି;
ଧୀରପଦେ ବୀରମଣି ପ୍ରବେଶିଲେ ଆସି ।
ବାର୍ଦ୍ଧକ୍ୟସୁଲଭ କ୍ଷୀଣ ନିଦ୍ରାରେ ପିରାନ
ଶୁଣି ସେ ଚରଣଧ୍ୱନି ଉଠିଲେ ତତ୍କ୍ଷଣ ।
କହିଲେ ଏସନ ଭର ଦେଇ ବାହୁପରେ
"କିଏ ଏଥି ? କାର ଆଗମନ ଉଷାକାଳେ ?
କି ଅବା ସଂବାଦ କହ, ଅବା ଆକ୍ରମଣ
କରିଛନ୍ତି ଅତର୍କିତେ ଘରେ ଅରିଗଣ ?"

ଧୀରେ ଯାଇ ଶଯ୍ୟାପାଶେ ଭଷେ ଖରବର,
"ସେନାପତେ, ଆସିଛି ମୁଁ ସୋରାବ ଭୂମ୍ବର,
ଉଠି ନାହିଁ ଦିନମଣି ଉଦୟୁ ଅଚଳେ,
ଅଶ୍ରିଛନ୍ନ ନିଦ୍ରା ଦେଖାଦେଲେ ଅଶ୍ୱଦଳେ ।
ସମଗ୍ର ରଜନୀ ଯାପିଅଛି ଅନିଦ୍ରାରେ;
ପଡ଼ିରହି ଛଟପଟ ହୋଇଛି ଶଯ୍ୟାରେ ।
ଯାତ୍ରା କାଳେ ଦେଇଥିଲେ ରାଜନ ଆଦେଶ
ଲଭିବାକୁ ପିତୃସମ ତବ ଉପଦେଶ ।
ସେଥିଲାଗି ତବ ପାଶେ ହୋଇଛି ଆଗତ;
କହ ଯାହା କରିବାର ଅଟଇ ବିହିତ ।
ବଖାଣିବି ତବ ପାଶେ ବାସନା ହୃଦର;
ଜାଣ ତୁମ୍ଭେ, ଆସିଅଛି ତାତାଷ୍ୟୁ ଦଳ;
ତେଜି ଆଦ୍ରବାଜା ଭୂମି ସେବଛି ରାଜନେ,
ତାଙ୍କ ଲାଗି ପଶିଅଛି ଗ୍ରାମ ରଣାଙ୍ଗନେ ।
ସରକାଣି ବାଂଲିକାଳେ ଯୁବକ-ବିକ୍ରମ
ବହିଅଛି ଦେଶେ ଦେଶେ ତାତାର-ଟେକନ;
କେତେ ରଣେ ନାଶ କରି ପାରସ୍ୟବାହିନୀ
ଖୋଜୁଛି ଜନକେ ମମ; ଜାଣ ସେ କାହାଣୀ ।
ଭାବିଥିଲି, ରଣକ୍ଷେତ୍ରେ ଲଭିବି ଦର୍ଶନ
ଦିନେ ହେଲେ ରୁସ୍ତମ ମୋ ତାତ ବୀରଗଣ ।
ନୁହେଁ ମୁଁ ଅଯୋଗ୍ୟ ସୁତ ଯୋଗ୍ୟ ଜନକର,
ସମ୍ଭାଷିବା ଇଚ୍ଛା ତାଙ୍କୁ ସମର କ୍ଷେତ୍ରର ।

ହେଲା ନାହିଁ ବହୁବର୍ଷେ ସେ ଆଶା ପୂରଣ ।
ସେଥିଲାଗି ସେନାପତେ କରେ ନିବେଦନ,
ଆଜ ଦିନ ଲାଗି ହେଉ ଯୁଦ୍ଧ ଅବସର,
ଦ୍ୱନ୍ଦ୍ୱଯୁଦ୍ଧେ ଆସୁ କେହ୍ନ ପାରସ୍ୟିକ ବୀର ।
ପାରସ୍ୟିକ ଦଳେ ଶ୍ରେଷ୍ଠ ବୀର ସହିତରେ
ଜୟୀ ହୁଏଁ ଯଦି ଆଜ ଦ୍ୱନ୍ଦ୍ୱ ଆହବରେ,
ଜାଣିବେ ନିଶ୍ଚୟ ପିତା; ହେଲେ ପରାଜିତ
ପ୍ରାଣ ସହ ଆଶା-ଲତା ହେବ ଉନ୍ମୂଳିତ ।
ମୃତର୍ ଥାଏ କି ଆଶା ଆତ୍ମୀୟ ସ୍ୱଜନେ ?
ରଣକ୍ଷେତ୍ରେ ଶତ ଶତ ବୀରନ୍ତି ମରଣେ;
କେତେ ବୀର ମରନ୍ତି ତା ନ ହୁଏ ଗଣିତ
ମାତ୍ର ଦ୍ୱନ୍ଦ୍ୱଯୁଦ୍ଧ ଯଶ ହୁଏ ଉଦ୍‌ଘୋଷିତ ।"

ଶୁଣି ସୋରବର ଏହି କରୁଣ ବଚନ,
ଯୁବକର କର ବୃଦ୍ଧ କରିଲେ ଧାରଣ,
ଦୀର୍ଘଶ୍ୱାସ ତେଜି, ଧୀର ମଧୁର ବଚନେ
କହିଲେ ପିରାନ ବୃଦ୍ଧ ସୋରବେ ଏସନେ,
"ହେ ବତ୍ସ, ଜାଣଇ ତବ ଆକୁଳ ଅନ୍ତର
ପିତାଙ୍କ ଦର୍ଶନ ଲାଗି ବ୍ୟଗ୍ର ନିରନ୍ତର ।
ତାତାର ସେନାଙ୍କର ଆଦରର ଧନ
ତୁମ୍ଭେ, ତାଙ୍କ ସଙ୍ଗେ ନିଜ ଭାଗ୍ୟ ସମ୍ମିଳନ
କରି, ରଣକ୍ଷେତ୍ରେ କିପାଁ ନ କର ପ୍ରବେଶ
ଦ୍ୱନ୍ଦ୍ୱଯୁଦ୍ଧେ ପଶିବାକୁ କିପାଁ ଏତେ ଆଶ ?

ଜାଣ ତ ବତ୍ସ କେଶି ଏସନ ସମରେ ।
ସତେ ନ ଭେଟିବ ତାତେ ଏଣ୍ଟ ପରକାରେ
ଲଭି ନାହଁ ଶୈଶବରୁ ଯା ମୁଖ ଦର୍ଶନ ?
ଇଷ୍ଟସିଦ୍ଧି ଲଗି କବା ନାହିଁ ପଥ ଆନ ?
ଜନକ ଦର୍ଶନ ଇଚ୍ଛା ଦଳନ୍ତୁ ଚରଣେ
ଆନ ସବୁ ବାଞ୍ଛା ତବ ହେଉଅଛୁ ମନେ;
ଗ୍ରୁଡ଼ ଏ ସମର ପନ୍ଥା ଖୋଜ ଶାନ୍ତପଥ
ହତେ ହେଲେ କାହିଁ କଷ୍ଟେ ଭେଟିବଟି ତାତ ।
ସମରର ସ୍ମୃତିରକ୍ତ-ଲେପିତ ଶରୀର
ଭେଟିବାକୁ ପିତୃପଦେ କପାଇଁ ଅସ୍ଥିର ?
ଅନାହତ ଦେହେ ସୁଖେ ହୋଇଲେ ଆଗତ
ପିତୃଦେବ ନେବେ ବେଗେ କରି କୋଳାଗତ ।
କିନ୍ତୁ ବତ୍ସ, ଶୁଣ ମୋର ଏ ତଥ୍ୟ ବଚନ
ପିତାଙ୍କ ସନ୍ଧାନ ଏଥି ଅରଣ୍ୟେରୋଦନ ।
ନାହାନ୍ତି ଜନକ ତବ ପାରସ୍ୟକ ଦଳ
ଅରି ସହ; ଅନ୍ୱେଷଣ କର ଦେଶାନ୍ତରେ ।
ଯୌବନ ସମୟେ ମୋର କରନ୍ତୁ ଦର୍ଶନ
ରଣକ୍ଷେତ୍ରେ ଅଗ୍ରଗାମୀ ଥିଲେ ସେ ରୁସ୍ତମ ।
ଯାଇଛନ୍ତି ସେ କାଳ ଏବେ; ସିସ୍ତାନ ନଗରେ
ରହିଥିବେ ବୃଦ୍ଧ ପିତା ଜାଲ୍ ସହିତରେ ।
ଅନୁଭବ ଅବା ସେହୁ ପ୍ରବଳ-ବିକ୍ରମ
ଅଙ୍ଗ ପ୍ରତିଅଙ୍ଗେ ଘୃଣ୍ୟ ଜରା ଆଗମନ,

ଅଥବା ପାରସ୍ୟ ରାଜେ ବିରୋଧ ଆଚରି
ଯାଇଛନ୍ତି ଗୃହ ଜନ୍ମଭୂମି ଅନୁସରି ।
ଯାଅ ତହିଁ ହୋଇପାରେ କାମନା ପୂରଣ
ନାହିଁ ଏଥି କିଛି ମୋର ଆପତ୍ତି କାରଣ ।
ମାତ୍ର ବତ୍ସ, ଶଙ୍କା ମୋର ଜାତ ହୁଏ ମନେ
ପଡ଼ିବ ବିପଦେ ଅବା ମରଣେ ଏ ରଣେ ।
ଯିବ ତେଜି ତୁମ୍ଭେ ଯଦି ତାତାସ୍ୱ ଦଳ
ଅବଶ୍ୟ ଲଭିବ ଖଣ୍ଡ ତାତାରର ବଳ;
ମାତ୍ରକ ଲଭିବି ମୁହିଁ ଅପାର ଆନନ୍ଦ
ନଗ୍ରପଦେ ଯାଇ ଯଦି ଦେଖ ପିତୃପଦ ।
ଦ୍ୱନ୍ଦ୍ୱଯୁଦ୍ଧ ଅଭିଳାଷ ଏବେ ପରିହର
ଶାନ୍ତଭାବେ ଚଳିଯାଅ ସିସ୍ତାନ ନଗର ।"

ନୀରବ ସୋରବ—ତହୁଁ ବୃଦ୍ଧ ସେନାପତି
ବୋଇଲେ, "ଜାଣିଛୁ ବତ୍ସ, ମୁଁ ତୋହର ମତି ।
କାରି କି ପାରଇ କେହ୍ନି କେଶରୀ କିଶୋରେ
ଶୀକାର ସମୀପୁ ? ବାଧା କିଏ ଦେବ ତୋରେ
ରୁସ୍ତମ ସନ୍ତାନେ ? ଯାଅ ଆନନ୍ଦିତ ମନ
ଦ୍ୱନ୍ଦ୍ୱଯୁଦ୍ଧ ଲାଗି ଦେଲି ଅନୁମତି ମମ ।"

ସୋରାବଙ୍କ ହସ୍ତ ତେଜି ବରଜି ଆସନ
ଜୀର୍ଣ୍ଣ ବସ୍ତ୍ରେ କରି ବୀର ବପୁ ଆଚ୍ଛାଦନ,

ସିନ୍ଧୁ ଉପାନ୍ତ ପଦେ ଉଠିଲେ ସ୍ଥବର ।
ରାଜୁଥିଲା ରାଜଦଣ୍ଡେ ତାଙ୍କ ସବ୍ୟ କର ।
କୃଷ୍ଣବର୍ଣ୍ଣ-ମେଷଚର୍ମ-ଶିରୋଭୂଷା ଶିରେ,
ଶ୍ୱେତବର୍ଣ୍ଣ ପ୍ରାବରଣ ବେଢ଼ିଛି ଶରୀରେ ।
ଯବନିକା ତୋଳି ବୃଦ୍ଧ ହୋଇଲେ ବାହାର
ଅଗ୍ରଦୂତ ସଙ୍ଗେ ସଙ୍ଗେ ହୁଏ ଅଗ୍ରସର ।

ଉଇଁଲେଣି ରବି ଏବେ ପର୍ବତୀ ଦିଗରେ,
ମିଶିଲାଣି କୁହେଳିକା ଆକାଶ ସଙ୍ଗରେ,
ପିରାନଙ୍କ ଅଧସ୍ତନ ହାମାନ ଆଦେଶେ
ତାତାରର ଅଶ୍ୱାରୋହୀ ପ୍ରାନ୍ତର ପ୍ରଦେଶେ
ବାହାରିଲେ କୃଷ୍ଣ ବସ୍ତ୍ରାଗାରୁଁ ଦଳେ ଦଳେ
ପ୍ରବାହିନୀ ସମ, ଯେସନ୍ତେ ହିମ ଉଷାକାଳେ
ବାହାରଣ ଦୀର୍ଘଗ୍ରୀବ ସାରସର ଦଳ
ଆରଲରୁ, ଆଚ୍ଛାଦନ୍ତି ପାରସ୍ୟୋପକୂଳ ।

ପ୍ରଥମେ ଚଳିଲେ ରାଜରକ୍ଷୀ ସେନାଗଣ
ଦୀର୍ଘବପୁ, କରି ଅଶ୍ୱପୃଷ୍ଠେ ଆରୋହଣ;
କୃଷ୍ଣବର୍ଣ୍ଣ ମେଷଚର୍ମ ଶିରସ୍ତ୍ରାଣ ଶିରେ
ବୋଖାରାନବାସୀ ଯାନ୍ତ ଭଲ୍ଲଧାରୀ କରେ;
ଅଶ୍ୱ ଦୁଗ୍ଧ ସୁରାପାନେ ଯାଙ୍କର ତୃପତ
ଯା ଦର୍ଶନେ ଚମକିବ ନିଶ୍ଚେ ଅରି ମତ ।

ଆସନ୍ତି ତା ପଛର ଦୀର୍ଘ ବର୍ଚ୍ଛାଧାରୀ ଧୀରେ
ମିତାହାରୀ ଅଟନ୍ତି ଯେ ଆହାର ବିହାରେ,
ଉଗ୍ର ଉଷ୍ଟ୍ର ଦୁଗ୍‌ଧପାୟୀ, ଅଶ୍ୱ ଆରୋହଣେ
ଚଳନ୍ତି ତାହାର ସୈନ୍ୟ ମଣ୍ଡିଣ ଚହଟଣେ ।
ଫର୍ଗାନାନିବାସୀ ପୁଣି ଯକ୍ଷ (୧) ତୀରବାସୀ
ତାହାର ସୈନିକ ସର୍ବେ ମିଳିଛନ୍ତି ଆସି;
କ୍ଷୁଦ୍ର ଶ୍ମଶ୍ରୁଧାରୀ, ଶିରେ କ୍ଷୁଦ୍ର ଶିରସ୍ତ୍ରାଣ
ସକଳେ ପ୍ରାନ୍ତର ପଥେ କରନ୍ତି ଗମନ ।
କାଲ୍‌ମୁକ (୨) କୁଜକ (୩) ଜାତି ଚଳନ୍ତି ପଶ୍ଚାତେ
ଭ୍ରମନ୍ତି ନିର୍ଭୟେ ଯେହ୍ନେ ମରୁଦେଶ ପଥେ ।
ଦ୍ରୁତଗାମୀ ବାଜୀରାଜି କରି ଆରୋହଣ
ସଙ୍ଗତେ ଚଳନ୍ତି ପୁଣି ଖିରଗିଜ୍ (୪) ଗଣ ।

ଆନ ପାଶେ ପ୍ରତିପକ୍ଷ ପାରସୀକ ଧାରେ
ଉଭା ହୋଇ ରହିଛନ୍ତି ସୈନିକ ବ୍ୟୂହରେ ।
ସମ୍ମୁଖେ ସଜ୍ଜିତ ଅଶ୍ୱାରୋହୀ ବୀର ଦଳ
ଆକାର ପ୍ରକାରେ ଯେତେ ଦିଶନ୍ତି ଭାତ'ର ।
ପଛେ ରାଜସୈନ୍ୟ ସାଥି ପଦାତି ଶୋଭନ
ଅୟସ ନିର୍ମିତ ବର୍ମେ ଗାତ୍ର ଆଚ୍ଛାଦନ ।

---

(୧) Jaxartes (୨) Kalmuks (୩) Kuzzak
(୪) Khirghizzes

ଅତନ୍ତରି ତାତାରର ଅଶ୍ୱାରୋହୀଗଣ
ଅଗ୍ରଗାମୀ ସୈନ୍ୟପାଶେ କରି ଆଗମନ
ଅଗ୍ରଦୂତ (୧) ସନ୍ତ ଖାର ବୃଦ୍ଧ ସେନାପତି
ନିବାରିଲେ ରାଜଦଣ୍ଡେ ସେନା ଅଗ୍ରଗତି ।

ଏହା ଦେଖି ପାରସ୍ୟିକବାହିନୀ ସେନାନୀ
ଶୂଳଧାରୀ ଫେରଯୂଦାଖାର ଚୂଡ଼ାମଣି
ସେନାଙ୍କ ସମକ୍ଷେ ଆସି ଦିଅନ୍ତେ ସଙ୍କେତ
ମନ୍ତ୍ରମୁଗ୍ଧ ପ୍ରାୟ ସର୍ବେ ହେଲେ ସ୍ତମ୍ଭୀଭୂତ ।
ସ୍ଥବିର ପିରାନ ବେନ ବାହିନୀ ମଧ୍ୟର
ଉଚ୍ଚ ହୋଇ ସମ୍ଭାଷିଲେ ବଚନ ଗମ୍ଭୀର—

"ଶୁଣ ଫେରଯୂଦ, ଶୁଣ ସୈନିକ ସକଳ
ଆଜିଦିନ ଲାଗି ହେଉ ଯୁଦ୍ଧ ଅବସର ।
ପାରସୀକ ଦଳୁଁ କର ଆଜ ନିର୍ବାଚନ
ତବ ବୀରମଣି, ଯେହୁ ହୋଇବ ଭଜନ—
ରଚିବାକୁ ଦ୍ୱନ୍ଦ୍ୱଯୁଦ୍ଧ ସୋରାବ ସଙ୍ଗତେ
ସୌନ୍ଦର୍ଯ୍ୟ ବୀରତ୍ୱ ଯାର ବିଦିତ ଜଗତେ ।"

ପକ୍ୱଶାଳୀରାଜି ଯେହ୍ନେ ଶାରଦ ଉଷାରେ
ଶିଶିର କଣିକା ଧରି ଶିରେ ହର୍ଷଭରେ
ନାଚଇ, ଆନନ୍ଦେ ତଥା ତାତାର ବାହିନୀ
ନାଚିଲେ ଦନ୍ତବେ ସର୍ବେ ଶୁଣି ଏହି ବାଣୀ ।

(୧) Herald

ସତେ କି ଆନନ୍ଦସ୍ରୋତ ବହିଲା ଅନ୍ତରେ
ସୋରାବର ନାମେ ଆଶା ହୃଦୟେ ସଞ୍ଚରେ ।

ଅନମ୍ବରଚୁମ୍ବୀ ତୁଙ୍ଗ ହିନ୍ଦୁକୁଶ ଗିରି
ଶିରେ ଦୁଗ୍ଧଫେନନିଭ ତୁହିନର ଶିଖି;
ଘୋର ଶୀତବାୟୁ ଯୋଗେ ତହିଁ ବିହଙ୍ଗମେ
ପକ୍ଷ ହିମବର୍ଷି ପରେ ଭଜନ୍ତି ମରଣେ ।
କାବୁଲର ଅଧିବାସୀ ବ୍ୟବସାୟିଗଣ
ଆସନ୍ତେ ସେ ଗିରିପଥେ କରନ୍ତି ଦର୍ଶନ
ଶତ ଶତ ମୃତ ଖଗ, ଶଙ୍କାରେ କାତର
ବିଶ୍ରାମ ନ ଘେନ ହୁଅନ୍ତି ଅଗ୍ରସର;
ଶୁଷ୍କ କଣ୍ଠ ତାଙ୍କୁ, ତେବେ ନ ଥାଏ ବିରାମ
ଅବଲୋକ ବିହଙ୍ଗମଗଣ ପରିଣାମ;
ଶର୍କରା ମିଶ୍ରିତ ବହୁବିଧ ମିଷ୍ଟଫଳ
ଥିଲେ ମଧ୍ୟ ନ ଥାଏ ତା ଭୁଞ୍ଜିବାକୁ ବେଳ,
କାଳେ ଶ୍ୱାସରୋଧେ ତହିଁ ମିଳନ୍ତି ପରାଣ
ଲଭିବେ ତୁଷାରସ୍ତୂପେ ଅନ୍ତିମ ଶୟନ ।

ତଥା ପାରସ୍ୟକ ସେନା ପିରାନଙ୍କ ଭାଷ-
ଣ୍ଡବଣେ ଶଙ୍କାରେ ସର୍ବେ ହେଲେ ରୁଦ୍ଧଶ୍ୱାସ ।
ମୁଖଶିରୀ ସଭିଙ୍କର ଦିଶିଲା ମଳିନ
ଚିନ୍ତା-ନଦେ ବୁଡ଼ିଗଲେ ପାରସ୍ୟ-ସଇନ ।

ଗଡ୍ଡରୁଜ, ଜୋବହାର, ଫେରବୁର୍ଜ ପୁଣ
ପାରସ୍ୟିକ ଦଳେ ଥିଲେ ଯେତେ ନେତାଗଣ
ଫେରଯୁଦ ପାଶେ ଯାଇ କଲେ ପରାମର୍ଶ;
ଚିନ୍ତାରେ ସଭିଙ୍କ ମୁଖ ଦିଶଇ ବିମର୍ଷ ।
ସେନାପତି ଗଡ୍ଡରୁଜ ଭାଷିଲେ ଏସନେ,
"ସୋହରାବ ତାତାର ଦଳେ ମାତ୍ର ସେନା ଜଣେ ।
'ଯୁଦ୍ଧଂ ଦେହି' ଡାକେ ଆଜ କରଇ ଆହ୍ୱାନ
ପାରସ୍ୟବାହିନୀ ତାହା କରିବ ଗ୍ରହଣ;
ପଦେ ତାର ମୃଗ-ଗତି, ହର୍ଯ୍ୟକ୍ଷକୁ ଜିଣି
ବିକ୍ରମ ହୃଦୟେ ; ଏହା ଅଛୁଁ ସର୍ବେ ଶୁଣି;
ପ୍ରତିପକ୍ଷ କେହି ଯେବେ ନୋହିବ ବାହାର
ଲଜ୍ଜାରେ ମରିବା ବିନା ହେବ ଏହି ଫଳ ।

କିନ୍ତୁ ଗତ ଯାମିନୀରେ ଦେଖିଛୁ ରୁସ୍ତମେ
ବସିଥିଲେ ଶୂନ୍ୟମନେ କପାଇଁ ମଣ୍ଡନେ
ଏକାକୀ ନିର୍ଜ୍ଜନେ ସୈନ୍ୟାବାସ ପାଶୁଁ ଦୂରେ;
ବସି କିବା ଭାବୁଥିଲେ ଚିନ୍ତିତ ଅନ୍ତରେ ।
ଯାଇ ତାଙ୍କ ପାଶେ ସର୍ବେ କରିବ ଜ୍ଞାପନ
ଯୁଦ୍ଧର ଆହ୍ୱାନ ବାର୍ତ୍ତା, ଯୁବକର ନାମ ।
ହେବ ଯଦି ତାହାଙ୍କର କ୍ରୋଧ ଅପଗତ
ଦ୍ୱନ୍ଦ୍ୱଯୁଦ୍ଧ ଲାଗି ତହୁଁ ହେବେ ସେ ସଜ୍ଜିତ ।
ଅପେକ୍ଷା କରନ୍ତୁ ସର୍ବେ, କରୁଛୁ ଗମନ
ଗ୍ରହଣ କରିବା ନିଶ୍ଚେ ଯୁଦ୍ଧ ନିମନ୍ତ୍ରଣ ।"

ଏତେ କହି ଯାନ୍ତେ ବୀର ରୁସ୍ତମ ସନ୍ଧାନେ
ଫେରଖୁଦ ଭଳେ ତହୁଁ ଭାଷିଲେ ଏସନେ,
"ଯୁଦ୍ଧର ଆହ୍ୱାନ ତବ କରୁଛୁ ଗ୍ରହଣ,
ପ୍ରତିପକ୍ଷ ହେବା ଏକା ଆମ୍ଭର ପ୍ରମାଣ ।
ତୁରାନୁ ସୋରାବ ଦ୍ୱନ୍ଦ୍ୱ ଲାଗି ସୁସଜ୍ଜିତ ।"
ଏ ବାଣୀ ଶ୍ରବଣେ ବୃଦ୍ଧ ହେଲେ ପ୍ରତ୍ୟାଗତ ।

ଚିନ୍ତାକୁଳ ପାରସୀୟଙ୍କ ସୈନିକ-ମଣ୍ଡଳୀ
ମଧ୍ୟେ ଗଡ଼ୁରୁଜ ତହୁଁ ବେଗେ ଗଲେ ଚଳି ।
ଶିବିରସାଗର ଅତିକ୍ରମି ପଥେ ବୀର
ପ୍ରବେଶିଲେ ଅନ୍ତେ ଯାଇ ସୈକତ ପ୍ରାନ୍ତର;
ଯହିଁ ବସ୍ତ୍ରାବାସଶ୍ରେଣୀ ବିଜଇ ରୁଚିରେ
ରକ୍ତବର୍ଣ୍ଣ, ଦୀପ୍ତ ସୃଷ୍ଟି ତପନ ତେଜରେ ।
ଉଚ୍ଚ ବସ୍ତ୍ରାତପ ତଳେ ଆସୀନ ରୁସ୍ତମ
ତଳ୍ପପାଶେ ଉଭଛନ୍ତି ଅନୁଚର-ଗଣ,

ପ୍ରାତରାଶ ଅନ୍ତେ ସୁଖେ ବସିଥିଲେ ବୀର
ଆନମନେ କ୍ରୀଡ଼ୁଥିଲେ ଶ୍ୟେନ ସଙ୍ଗତର ।
ସମାଗତ ଗଡ଼ୁରୁଜେ ଦେଖି ବୀରମଣି
ତେଜି ପର୍ଯ୍ୟଙ୍କ, ସମ୍ଭାଷିଲେ ଧରି କରବେନ—

"ବହୁ ଭାଗ୍ୟ ଆଜି ଯାହା ଲଭିଲି ଦର୍ଶନ
ଅସମୟେ କିପାଁ ଏଥି ତବ ଆଗମନ ?

ଆସ, ଏ ଆସନେ ବସ, ଥାଉ ସବୁ କଥା,
ଭୋଜନାନ୍ତେ କହ ମୋତେ ସକଳ ବାରତା ।"

ଦ୍ୱାର ପାଶେ ରକ୍ଷୀ ବୀର ଭାଷିଲେ ଉତ୍ତର,
"ଅଶନ ବ୍ୟସନ ଲାଗି ନାହିଁ ଅବସର ।
ଆଜ ଦିନେ ଆସି ତବ ଆତିଥ୍ୟଗ୍ରହଣ
କରିବ, ଅଛଇ ଏବେ କଠୋର କରମ ।
ସୈନ୍ୟଗଣ ଉଭ ଏବେ ଅଛନ୍ତି ପ୍ରାନ୍ତରେ
ଯୁଝିଁ ରହିଛନ୍ତି ସର୍ବେ ଉଷତ ଅନ୍ତରେ ।
ତାତାର-ସୈନିକ ମଧ୍ୟେ ବୀର ଏକ ଜଣ
ଦ୍ୱନ୍ଦ୍ୱଯୁଦ୍ଧ ଲାଗି କରେ ଆମ୍ଭଙ୍କୁ ଆହ୍ୱାନ ।
'ସୋରାବ', ଏ ନାମେ ସେହୁ ସକଳେ ବିଦିତ,
ଶୁଣିଥିବ ନାମ ତାର, କୁଳ ଅବିଦିତ ।
ହେଲେହେଁ ଯୁବକ ବୟେ, ଶୌର୍ଯ୍ୟେ ତବ ସମ
ବନମୃଗ ସମ ଦ୍ରୁତ ତାହାର ଚରଣ ।
ସିଂହର ବିକ୍ରମ ଅବା ଅନ୍ତରେ ତାହାର
କି ଭରିବା ଏ ସଙ୍କଟେ କର ହେ ବିଚାର ।
ଇରାଣର ଯୋଦ୍ଧୃବୃନ୍ଦ ସକଳେ ପ୍ରାଚୀନ,
ହେ ଅବା ଯୁବକ, ବଳେ ପ୍ରତିପକ୍ଷୁଁ ହୀନ;
ନିବଦ୍ଧ ସକଳ ଦୃଷ୍ଟି ଆଜ ତବ ପରେ,
ଆସି ଏ ସଙ୍କଟେ ରଖ ପାରସୀକ ଦଳେ ।"

ଏହା ଶୁଣି ମୃଦୁ ହସି ବୋଇଲେ ରୁସ୍ତମ
"ବୃଦ୍ଧ ଯଦି ଆଜ ଇରାଣର ବୀରଗଣ,
ବୃଦ୍ଧତମ ଅଟେ ମୁହିଁ ନିଷ୍ଟୟ ବୟସେ
ଆସିଅଛ ମୋହପାଶେ ଛେଡିବେ କେଉଁ ଆଶେ ?
ଦୁର୍ବଳ ଅଟନ୍ତି ଯେବେ ଯୁବ-ଯୋଦ୍ଧୃ-ଗଣ,
ମହାଭ୍ରମେ କପଟଇ ଟେଡେବେଟି ରାଜନ ।
ଯୁବକ ସେ, ପ୍ରକାଶନ୍ତି କୃପା ଯୁବାଗଣେ,
ବୃଦ୍ଧଗଣ ନ ପାଆନ୍ତି ସ୍ଥାନ ରାଜକର୍ମେ ।
ଇଚ୍ଛା ତାଙ୍କ, ବୃଦ୍ଧଗଣ ଲଭନ୍ତୁ ମରଣ
ସମାଧି ମନ୍ଦିର ହେଉ ତାଙ୍କର ଶରଣ ।
ନ କରନ୍ତି ଲବେ ବୃଦ୍ଧ ରୁସ୍ତମେ ଆଦର
ଯୁବକେ ଢାଳନ୍ତି ସେହ୍ନ ଶ୍ରଦ୍ଧା ନିରନ୍ତର ।
ଶୁଣି କର୍ଣ୍ଣେ ସୋରବର ଗର୍ବିତ ବଚନ
ହଟିବେ ସଶସ୍ତ୍ର ସିନା ଯୁବା ବୀରଗଣ ।
ଗାଆନ୍ତୁ ସରବେ ସୋରବର ଯଶଗୀତ
କହ ତହିଁ ଅଛି କିବା ମୋର ଲାଭ କ୍ଷତ ?
ଥାଆନ୍ତାଟି ଯେବେ ମୋର ତେସନ କୁମର
ରୂପେ ଗୁଣେ ଶୌର୍ଯ୍ୟେ ବୀର୍ଯ୍ୟେ ଧରାରେ ଅତୁଳ,
ସାନନ୍ଦ ଅନ୍ତରେ ଆଜ ପଠାନ୍ତି ସମରେ,
କାଳ କାଟୁଥାନ୍ତି ରଦ୍ଧ ପିତାଙ୍କ ସଙ୍ଗରେ ।
ଜନକ ଦୁର୍ଦ୍ଦଶା ଶୁଣି କାନ୍ଦେ ମୋ ଅନ୍ତର
ଆଫଗାନ ଦସ୍ୟୁଗଣ କରନ୍ତି ଅସ୍ଥିର,

ସୁବିଧା, ସମୟ ଦେଖି କର ଆକ୍ରମଣ
ଅଧିକାର କରୁଛନ୍ତି ରାଜ୍ୟପ୍ରାନ୍ତ ପୁଣ ।
କେବେ ବା ଲୁଟାଇ ନେଇ ଗୋଷ୍ଠୁଁ ମେଷପଲ
ସ୍ଥବିର ଜନଙ୍କେ କରୁଛନ୍ତି କଲବଲ ।
ଗଲେ ଗୃହେ, ଥାଉ ବର୍ମ ଅସି ଶର ଆଦି
(ରକ୍ଷିତ ତା ଅସ୍ତ୍ରାଗାରେ ଯତନେ ସମ୍ପାଦି)
ମୋ ନାମ ଶ୍ରବଣ ମାତ୍ରେ ତ୍ରସ୍ତ ଅରିଗଣ
କରବେ ସରବେ କିଏ କାହିଁ ପଳାୟନ ।
ରହନ୍ତି ଆନନ୍ଦେ ଯେଣ ଅର୍ଜିତ ସମ୍ପଦ
ଏ ବୟସେ ବର୍ପା ମୋର ଘଟନ୍ତା ବିପଦ ।
ହାୟ ! କାହିଁ ମୋର ଆଶା ? ମ୍ଳାନ ମୋ ଜୀବନ
ଜନ୍ମିଲା ଦୁର୍ବଳା କନ୍ୟା ନୋହି ପୁତ୍ରଧନ ।
ଯାଆନ୍ତୁ କୃତଘ୍ନ ନୃପ, ସୈନ୍ୟେ ରସାତଳେ
ତଥାପି ଧରିବ ନାହିଁ କେବେ ଅସି କରେ ।”

ଏତେ କହି ହାସ୍ୟରେଖା ଫୁଟାଇ ଅଧରେ
ନୀରବ ରୁସ୍ତମ; ତହୁଁ ଭାଷିଲେ ଉତ୍ତରେ
ଗଡ଼ୁରୁଜ, “ହେ ରୁସ୍ତମ, କି କହିବେ ଜନେ
ସୋହରାବ ମାଗୁଛି ରଣ ପାରସ୍ୟ-ସଇନେ
ଅବଶେଷରେ ରଚିବାକୁ ବୃଦ୍ଧେ ସଙ୍ଗେ ତବ
ଦ୍ୱନ୍ଦ୍ୱଯୁଦ୍ଧ; ତବ ପକ୍ଷେ ଏହା କି ସମ୍ଭବ,
ରହିବ ଲୁଚାଇ ମୁଖ ? ସହିବ କେମନେ
ଘୋର ଲୋକନିନ୍ଦା, ଯେବେ କହିବେଟି ଜନେ

'ପ୍ରାଚୀନ କୃପଣ ସମ ବୀରେନ୍ଦ୍ର ରୁସ୍ତମ
ଅରଜି ସମରାଙ୍ଗଣେ ଚିର ଯଶୋଧନ
ଯୁବା ସଙ୍ଗେ ଯୁଝି ତାହା ହାରିବାର ଭୟେ
ଲୁଚି ରହିଅଛି ଦେଖ ନିଜ ବସ୍ତ୍ର ଲୟେ ।"

ଏହା ଶୁଣି ହୋଇ ବୀର ବିଚଳିତ ଚିତ୍ତ
କହିଲେ, "ଏସନ ବାକ୍ୟ ଅଟେ କି ଉଚିତ ?
ଶୁଣିବାକୁ ହେଲ ପୁଣି ତୁମ୍ଭ ମୁଖୁଁ ଏହା ?
ପୋଡ଼ିଯାଏ ଏ ବଚନେ ଆହା ମୋର ହିଆ ?
ଜାଣ ତୁମ୍ଭେ ଭଲ ମତେ, କେବେହେଁ ରୁସ୍ତମ
ନ କରଇ ଲେଖେ ଗ୍ରାହ୍ୟ ତାର ଅବଗଣ;
ବୃଥା କପାଁ କହ ତାରେ ଖ୍ୟାତ ବା ଅଜ୍ଞାତ
ସାହସୀ ବା ଭୀରୁ, ସର୍ବେ ଅଟନ୍ତି ଅରି ତ ।
ସରବେ'ତ ମର, ଭବେ ! ମୁହିଁ କି ଅମର ?
ଶୁଣିଛି କି ଭବେ କାରେ ରକ୍ଷା ମରଣର ?
ତେବେ ବୃଥା ରକ୍ତପାତେ କିବା ପ୍ରୟୋଜନ ?
କିନ୍ତୁ ଦେଖ ଯଶୋଧନ ରଖିଛି କେସନ ।
ହେଉ ପଛେ ପଣବନ୍ଧ ତାହାର ସହିତ
କରିବ ସମର ମୁହିଁ ରହି ଅଚିହ୍ନିତ ।
ଇତର ସୈନିକ ଅସ୍ତ୍ର କଲେ ବ୍ୟବହାର
ନ ଜାଣିବେ କେହି ମୋତେ, ନ କହୁ ହୁସାର
"ଦ୍ୱନ୍ଦ୍ୱେ ମରନର ସହ ଯୁଝିଲି 'ରୁସ୍ତମ' ।"
ଏତେ କହୁ କହୁ ହେଲା ଆରକ୍ତ ବଦନ ।

ଶୁଣି ଏତେ ଗଡ଼ରୁଙ୍କ ଘେନଲେ ମେଲାଣି
ଭୃରେତ ଶିବରେ ଗଲ ଘେନ ଏଷ୍ଣ ବାଣୀ
ରୁସ୍ତମ ଯୁଝିବେ ଶୁଣି ଆନନ୍ଦିତ ଚିତ୍ତ
ମାତ୍ର ରୁସ୍ତମଙ୍କ କ୍ରୋଧେ ଶଙ୍କା ହୁଏ ଜାତ ।

ରୁସ୍ତମ ଆଦେଶ ଦେଲେ ଅସ୍ତ୍ର ଆନୟନେ
ଅଚ୍ଛିଦ୍ର ବର୍ମେ ଆବରିଲେ ଅପଘନେ ।
ଅସ୍ତ୍ର ଶସ୍ତ୍ର ଯେତେ ସବୁ କାରୁକାର୍ଯ୍ୟହୀନ,
ନ ଥିଲା ଉରସ୍ତ୍ରେ ତାଙ୍କ କଣ୍ଟମାତ୍ର ଚିହ୍ନ ।
ସୁବର୍ଣ୍ଣ ଖଚିତ ଶିରସ୍ତ୍ରାଣ ଶୋଭେ ଶିରେ
ଅଶ୍ୱ ପୁଚ୍ଛକେଶ ତହିଁ ସଜଇ ରୁଚିରେ ।
ପ୍ରିୟ ତୁରଙ୍ଗମ ତାଙ୍କ ଚଳଇ ପଶ୍ଚାତେ
ପ୍ରଭୁଭକ୍ତ ଶ୍ୱାନ ଅବା ପ୍ରଭୁ ପଛେ,ସତେ ?

ଏକଦା ରୁସ୍ତମ କୋଶାଗାର ଅଭିଯାନେ
ନ ତଟେ ହର୍ଷଭରେ ଦେଖିଲେ ନୟନେ
ମାତୃସ୍ତନ୍ୟପାୟୀ କେବଳ ଶିଶୁ ତୁରଙ୍ଗମ
ସ୍ନେହବଶେ ଘେନିଗଲେ ତାହାକୁ ସଦନ,
ପାଳିଲେ ଆଦରେ, ଦିନୁଁ ଦିନ ସେ ବର୍ଦ୍ଧିତ
ହୋଇଣ ମୋହିଲା ଏବେ ରୁସ୍ତମଙ୍କ ଚିତ୍ତ ।
ପାଟଳ ଶରୀର ତାର ସୁଦୀର୍ଘ କେଶର
ମଣ୍ଡି ଗ୍ରୀବାଦେଶ ଦିଶେ ଅତି ମନୋହର ।

ସେହି ଅଶ୍ୱ ଚଳେ ଆଜ ପ୍ରଭୁଙ୍କ ସଙ୍ଗତେ
ରୁକ୍ଷ ନାମ, ରୂପେ ଗୁଣେ ବିଦିତ ଜଗତେ ।
ପୃଷ୍ଠାସନ ପରେ ସଜେ ବସ୍ତ୍ର ଆବରଣ
ସୁବର୍ଣ୍ଣ ଖଚିତ ପୁଷ୍ପ ବିଚିତ୍ର ବରଣ ।
ବହୁବିଧ କାରୁକାର୍ଯ୍ୟେ ଖଚିତ ବିଶାଳ
କେତେ ପ୍ରତିକୃତି ତହିଁ, ନୋହିବ ତା କହି ।

ଚଳିଲେ ରୁସ୍ତମ ଯହୁଁ ତେଜି ବସ୍ତ୍ରାବାସ
ବିଷର୍ଣ୍ଣ ପାରସ୍ୟ ସୈନ୍ୟ ଲଭିଲେ ହରଷ ।

ମୁକ୍ତା ଆଶାୟୀ ଧୀର ଧୀବର ଯେସନ
ବରଜ ସୈକତତଟେ ରମଣୀରଞ୍ଜନ
ଯାଆନ୍ତି ସାଗର ଗର୍ଭେ, ମଜ୍ଜି ବିଷାଦରେ
ଝରୁଥାଏ ଅଶ୍ରୁଧାର ସାଗର ତଟରେ,
ସାୟାହ୍ନେ ଆହରି ମୁକ୍ତା ଆସଇ ଧୀବର
ପ୍ରିୟାସହ ମିଳି ହୁଏ ସାନନ୍ଦ ଅନ୍ତର,
ଯାଆନ୍ତି କୁଟୀରେ ବେନ ହର୍ଷେ ଦିବାଶେଷେ
ଦିବସର ଦୁଃଖରାଶି ନ ଭାଳନ୍ତି ଲେଶେ ।
ତେସନେ ନୈରାଶ୍ୟ ମଗ୍ନ ପାରସ୍ୟ-ସଇନେ
ହର୍ଷ ଧ୍ୱନି କଲେ ସର୍ବେ ରୁସ୍ତମ ଦର୍ଶନେ ।

କୃଷିବଳ ପକ୍ୱଶାଳି, ପ୍ରଶସ୍ତ କେଦାରେ
ମଧ୍ୟ ଶସ୍ୟ କାଟି ପଥ କରେ ଯେ ପ୍ରକାରେ

ପର୍ବତ ବକ୍ଷମଧାସ୍ତ ଅଶ୍ୱାରୋହୀଗଣ
ସୈନିକଭ ସରଣୀ ପାଶେ ରହିଲେ ତେସନ ।

ଉନ୍ମୁକ୍ତ ବାଲୁକା ପଥେ ସଶସ୍ତ୍ର ରୁସ୍ତମ
ଆସି ତାତାଶ୍ୱପୁ ଦଳ କରନ୍ତେ ଲଙ୍ଘନ
ଦେଖିଲେ ସୋହରାବେ; ବସ୍ତ୍ରାବାସୁଁ ସମାଗତ;
ବେନ ବୀରଙ୍କର ଚକ୍ଷୁ ହୋଇଲା ମିଳିତ

ଧନବନ୍ତ ନାରୀ ଉଠି ଶିଶିର ପ୍ରତ୍ୟୂଷେ
ନ ଲଭ୍ଭିଁ ତାରକା ଯନ୍ତ୍ର ସୁନୀଳ ଆକାଶେ
ଟେଇ ଗବାକ୍ଷର ବହୁମୂଲ୍ୟ ଆବରଣ
ମୁକୁତା ମଣ୍ଡିତ କାଚେ କରଇ ଦର୍ଶନ
ଅଙ୍ଗନେ ତାହାର ଦାସୀ ଶ୍ରୀଷଣ କଷ୍ଟେଣ
ଜ୍ୱାଳେ ଅଗ୍ନି କରଯୁଗେ ଶୈତ୍ୟ ନିବାରଣେ
ଦେଖି ନାରେ କିବା ଚିନ୍ତା ଜାଗେ ତା’ ଅନ୍ତରେ
କିବା ଉଦାସୀନ ନେତ୍ରେ ଦେଖେ ସେ ଦାସୀରେ;
ରୁସ୍ତମ ରହିଲେ ଚାହିଁ ଯୁବକେ ତେସନ
ନ ଜାଣନ୍ତି ଯାର କୁଳଶୀଳ ବାସସ୍ଥାନ ।
(ହାୟ, ସେ ଖୋଜନ୍ତି କେତେ ଜନକ ସ୍ୱସୁତମେ
ଉପେକ୍ଷିଣି ଇରାନର କେତେ ବୀରଗଣେ ?)
ନିରେଖି ଯୁବକେ ବୃଦ୍ଧ ଚିନ୍ତିଲେ ଅନ୍ତରେ
କିଏ ଏହି ଯୁବା, ନିଶ୍ଚେ ଲଳିତ ଆଦରେ ।

ସାଇପ୍ରେସ ବୃକ୍ଷ ଯଥା ଉନ୍ନତ ସରଳ
ରାଜୋଦ୍ୟାନେ ରାଜେ ଲଭି ବହୁତ ଆଦର
—ଯଙ୍କ ଶର୍ବରୀରେ ଯାର ଗ୍ରୀବା ପଡ଼ି ତଳେ
ଡାକିଦଏ ଜ୍ୟୋତ୍ସ୍ନା ଆଲୋକିତ ତୃଣଦଳେ—
ତେମନ ମାଧୁରୀ ତଥା ଲାବଣ୍ୟ ତେମନ
ପରକଟ କରୁଥିଲା ଯୁବକ ବଦନ ।

କରୁଣାରେ ଦ୍ରବୀଭୂତ ବୀରେନ୍ଦ୍ର ରୁସ୍ତମ
ଅଙ୍ଗୁଳି ସଙ୍କେତେ କରି ଯୁବକେ ଆହ୍ୱାନ,
କୋଇଲେ ସସ୍ନେହେ ତହୁଁ, "ଶୁଣ ଯୁବାମଣି,
ଆହ୍ୱାନ କରୁଛ କପାଁ ମୃତ୍ୟୁ ଜାଣିଶୁଣି,
ସ୍ୱର୍ଗ ସମୀରଣ ବିନା ଆହ୍ଲାଦ କାରଣ
ସମାଧି ମନ୍ଦିରେ ତାହା ଅଟଇ ସ୍ୱପନ ।
ବରଇ କି କେବେ କେହ୍ନ ସମାଧି ମନ୍ଦିର
ଗାଢ଼ ସୁରଭିତ ସ୍ୱର୍ଗ ସୁଷମା ସମ୍ଭାର ?
ବିଶାଳ ମୂରତି ମୋର କଞ୍ଚୁକେ ଆବୃତ
ବହୁ ରଣେ ହୋଇଛି ମୋ ଅଙ୍ଗ ଦୃଢ଼ୀଭୂତ,
ପରାଜୟ କିବା ଜାଣେ ନାହିଁ ଏ ଜୀବନେ
ପରାଣେ ନ ଫେରେ ଅରି ମୋହ ସଙ୍ଗେ ରଣେ ।
ଜାଣି ଶୁଣି ତେବେ କପାଁ, ସୋହରାବ, ଏମନ
ଆଲିଙ୍ଗନ କରୁଅଛ ନିଶ୍ଚିତ ମରଣ ?
ଶୁଣ ମୋର ଉପଦେଶ ବରଜ ତାତାରେ
ମମ ପୁତ୍ର ସମ ରହ ଇରାନର ଦଳେ ।

ଯେତେକାଳ ଥିବ ମୋର ଶରୀରେ ପରାଣ
ମୋର ବାହୁଯୁଗ୍ମା ନ ଟଳେ କରୁଥିବ ରଣ ।
ଦେଖି ନାହିଁ ଇରାଣର ସେନାମା ଗହଣେ
ତବସମ ସାହସିକ ବୀର ଆନ ଜଣେ ।”

ରୁସ୍ତମ ଭାଷିଲେ ଏତେ ମଧୁର ବଚନେ
ପଡ଼ିଲ ସେ ମଧୁଭାଷ ସୋରାବ ଶ୍ରବଣେ ।
ଅଗ୍ରେ ଉଚ୍ଚ ଦୀର୍ଘ ବପୁ, ପ୍ରବୀଣ ରୁସ୍ତମ
ବିସ୍ତୀର୍ଣ୍ଣ ସୈକତ ପରେ, ଦିଶନ୍ତି ଯେସନ *
ଆଶ୍ରୟ ଦେବାକୁ ଦସ୍ୟୁ-ଭୀତ ପାନ୍ଥଗଣେ
ପ୍ରାଚୀନ ଜଗତ ଉଚ୍ଚ ଅବା ମନ୍ଦ ସ୍ଥାନେ ।

ନିରେଖି ରୁସ୍ତମ ଶିରେ ଧୂସରିତ କେଶ
ଆଶାରେ ଭରିଲା ସୋରାବର ହୃଦଦେଶ;
ଦ୍ରୁତ ଯାଇ ଆଲିଙ୍ଗନ କଲେ ଜାନୁପରେ
ହସ୍ତ ବେନ ଟୋଳ ନେଲେ ଧୀରେ ନିଜ କରେ ।
ଭାଷିଲେ ସେ, “କିଏ ତୁମ୍ଭେ ? ପିତାଙ୍କର ସଣ
ତୁମ୍ଭ ସଣ, କହ ଫେଡ଼ି, ତୁମ୍ଭେ କି ରୁସ୍ତମ ?”

ଅବନତ ଯୁବାପରେ ଅପାଙ୍ଗେ ଅନାଇ
ବୋଲାଇଲେ ସ୍ୱଗତ ବୀର ଆନ ଦିଗେ ଚାହିଁ ।
“କି ଆଶ୍ଚର୍ଯ୍ୟ ? କିଏ ଏହି ଧୂର୍ତ୍ତ ଶିରୋମଣି
କବା ଅଭିସନ୍ଧି ରଖି ଭାଷେ ମିଷ୍ଟବାଣୀ ।

ଅବିଶ୍ୱାସୀ, ପ୍ରତାରକ, ଅଭିମାନୀ ପୁଣି
ତାତାର ବାଳକଗଣ—ଅଛୁ ଏହା ଶୁଣି;
ଦେଖିଲେ ପରିଚୟ ଛଦ୍ମବେଶ ପରିହରି
କହେଁ ଯଦି "ଅଗ୍ରେ ଜଣ ରୁସ୍ତମ ତୋହର ।"
ହେବ ନାହିଁ ଏ ଯୁବକ କେବେ ବଶୀଭୂତ
ନ ହେଜବ ତାତାରର ସନ୍ଧି କଦାଚିତ ।
ଦେଖାଇ ଛଳନା ହେଜ ମୋହ ସଙ୍ଗେ ରଣ
କରିବ ସମ୍ମୁଖେ ମୋର ନାନା ଯଶୋଗାନ ।
ସୌଜନ୍ୟର ଚିହ୍ନରୂପେ ଦେଇ ଉପହାର
ବନା ରଣେ ଯିବାପାଇଁ ଯୁବାର ସ୍ୱଭାବ ।
ଫେରି ନିଜ ଦେଶେ ଯୁବା ତାତାର ପ୍ରାସାଦେ
ଉତ୍ସବେ ବୋଲିବ ଯାଇ ଗର୍ବେ ଅପ୍ରମାଦେ,
'ଦିନେ ଅକ୍ଷ ତଟେ ଦେବ ପକ୍ଷ ସମକ୍ଷରେ
ଦ୍ୱନ୍ଦ୍ୱରଣେ ଆହ୍ୱାନଲି ପାରସୀକ ବୀରେ
ଯୁଦ୍ଧ ନିମନ୍ତ୍ରଣ ମୋର କରିବ ଗ୍ରହଣ
ନୋହିଲା ସାହସ କା'ର । କେବଳ ରୁସ୍ତମ
ଦମ୍ଭ କରି ଆସିଥିଲା ତହିଁ ମୋର ପାଶେ,
ସମସ୍କନ୍ଧ ଶତ୍ରୁ ଦେଖି ମିଳଗଲା ଶେଷେ;
ପରସ୍ପରେ ଉପହାର ଦେଇ ସସମ୍ମାନେ
ବିଦାୟ ହେଲୁଁ ଦୁହେଁ ଆନନ୍ଦିତ ମନେ ।'
ବୃଥା ଗର୍ବେ ସର୍ବେ ତାର କରିବେ ପ୍ରଶଂସା
ମୋ ହେନ ଇରାନ ସିନା ହେବ ଲୋକହସା ।"

ଏସନ ଚତୁର ମନେ ଘେରନ୍ତ ରୁସ୍ତମ
ସୋରବେ ଭାଷିଲେ ତହୁଁ ପରୁଷ ବଚନ,
"ଶଠ, ରୁସ୍ତମର କଥା ପୁଚ୍ଛୁ କି କାରଣେ ?
ଆସିଅଛି ଏଥି ମୁହିଁ ଯୁଦ୍ଧର ଆହ୍ୱାନେ
ରହାକର ଶକ୍ତିବଳେ ନିଜ ବଣ୍ଡ ପଣ
ଅଥବା ସ୍ୱୀକାର କର ଅଧୀନତା ମମ ।
ରେ ଅର୍ଭକ, ଅବା ତୋର କାମନା ମନର
ରଚିବାକୁ ଦ୍ୱନ୍ଦ୍ୱ ଏକା ରୁସ୍ତମ ସଙ୍ଗର ।
ରୁସ୍ତମର ଭୀମ ମୂର୍ତ୍ତି ଦର୍ଶନ ମାତରେ
ପଳାନ୍ତି ଅରିଏ କାହିଁ ପବନ ବାତରେ ।
ରୁସ୍ତମ ଥାଆନ୍ତେ ଯଦି ପ୍ରକାଶ୍ୟ ସମ୍ମୁଖେ
ଯୁଦ୍ଧ କଥା ନ ଆଣନ୍ତୁ ମୂଢ, ଆଜ ମୁଖେ ।
ମୋର ପରିଚୟେ କିଛି ନାହିଁ ପ୍ରୟୋଜନ
କହୁଅଛି ଏତେ ମାତ୍ର, ଶୁଣ ମୋ ବଚନ,
ତେଜ ବୃଥା ଗର୍ବ, ଅବା ହୁଅ ବଶୀଭୂତ
ନୋହିଲେ ତୋ ଅସ୍ଥି ଏଥି ମଣ୍ଡିବ ସୈକତ ।
ଦିନୁ ଦିନ ଧବଳତ ହୋଇ ସମୀରଣେ
ଭାସିଯିବ ଦୂରଦେଶେ ଅକ୍ଷସ୍ରୋତେ ଦିନେ ।
ହୃଦପଟେ ଲେଖି ରଖ ମୋର ଏହି ବାଣୀ
ଶେଷ କଥା କହୁଛି ମୁଁ ଥାଅ ଏହା ଜାଣି ।"

ସୋରବ ଏ ବାଣୀ ଶୁଣି ଉଠିଲେ ସଧୀରେ
ପ୍ରତ୍ୟୁତ୍ତର ଦେଲେ ତହୁଁ ସୁଗମ୍ଭୀର ଗିରେ ।

"ସତେ ଏଡ଼େ ଖ୍ୟାତ ତୁମ୍ଭେ ? ନୁହେଁ ମୁଁ ରମଣୀ
ତ୍ରସ୍ତ ହେବ ଭୟେ, ଶୁଣି ତବ ଏନ୍ତ ବାଣୀ ।
ରୁସ୍ତମ ଥାଆନ୍ତେ ଯେବେ ଯୁଦ୍ଧେ ପ୍ରୟୋଜନ
ନ ଥାନ୍ତା, କହିଲ ଯାହା, ସତ୍ୟ ସେ ବଚନ ।
ସେ ତ ତେବେ ଛନ୍ତି ଦୂରେ ? ଆମ୍ଭେ ଦୁଇ ବୀର
ହେଉ ଏ ପ୍ରାନ୍ତରେ ଆଜ, କରିବା ସମର ।
ଜାଣେ ତୁମ୍ଭେ ପରାକ୍ରମୀ, ଭୀଷଣ ଦର୍ଶନ
ବହୁ ରଣକ୍ଷେତ୍ର ପୁଣି ହୋଇଛ ଉତ୍ତୀର୍ଣ୍ଣ !
ବାଳକ ମୁଁ, ତେବେ ହେଲେ ନ ଭାବ ଏମନ୍ତ
ଜୟଲକ୍ଷ୍ମୀ ହେବେ ନିଶ୍ଚେ ତବ କରଗତ ।
ଜୟ ପରାଜୟ ଦେବ ଭାଗ୍ୟର ଆୟତ୍ତ !
ଦେବଙ୍କ ଇଚ୍ଛାରେ ସବୁ ଘଟଇ ନିୟତ
ନ ଜାଣ କି ଘଟିପାରେ ତବ ଭାଗ୍ୟେ ରଣେ ?
ବିଜୟଶ୍ରୀ କରେ ତବ ପାଞ୍ଚୁ ଅଛ ମନେ ।
ଅଦୃଷ୍ଟର ଊର୍ମିପରେ ସର୍ବେ ଭାସମାନ
(ସିନ୍ଧୁବକ୍ଷେ ସନ୍ତରଣ-ପ୍ରୟାସୀ ସମାନ,
ଶେଷେ କାର୍ଯ୍ୟ ସିଦ୍ଧି ହସି, କିଏ କହମାତରେ
ବେଳାଭୂମେ ଅବା ଘୋର ବାରିଧି ଗର୍ଭରେ ।
ଲଭିବାକୁ ଶରଣଦ୍ୱା ? ଅଟଇ ଅଜ୍ଞାତ
ଅଦୃଷ୍ଟର ଗତିବିଧି, ଏ କଥା ନିଶ୍ଚିତ ।
ଯଥାକାଳେ ନିୟତିର ଗତି ପଡ଼େ ଜଣା
ଆସ ଯୁଦ୍ଧ କର ଏବେ ବୀରଜ ବଢ଼ମ ।। )

ସୋରାବର ବାକ୍ୟ ଶାର ନ ଦେଇ ଉତ୍ତର
କରେ ସ୍କନ୍ଧୁଁ ବର୍ଚ୍ଛା ଆଣି ପେଷିଲେ ସତ୍ୱର
ସୋରାବେ ଉଦ୍ଦେଶ୍ୟ କରି ଦେଖି ଅସ୍ତ୍ରଗତି
ବିଦ୍ୟୁଦ୍‌ବେଗେ ଲମ୍ଫ ଦେଇ ସୋରାବ ଧୀମତି ।
ରକ୍ଷା କଲେ ନିଜ ଦେହ; ସନ୍‌ସନ ସ୍ୱରେ
ଆସି ଅସ୍ତ୍ର, ଭୂମି ଖୋଳି ପଡ଼ିଲା ଅଦୂରେ ।
ଯଥା ଶ୍ୟେନ ପକ୍ଷୀ ଉଡ଼ି ଉଚ୍ଚ ଚକ୍ରାକାରେ
ବ୍ୟୋମଦେଶେ, ପଡ଼େ ଯାଇ ଚକୋର ଉପରେ,
ଲୌହପିଣ୍ଡ ସମ, ବର୍ଚ୍ଛା ପଡ଼ିଲା ତେସନ,
ସୋରାବ ସ୍ୱ ଅସ୍ତ୍ର ତହୁଁ କରିଲେ ଚାଳନ ।
ବାଜିଲା ସେ ଶୂଳ ଯାଇ ରୁସ୍ତମ ଫଳରେ
ମାତ୍ର ଲୌହ ବର୍ମାଘାତେ ପଡ଼ିଲା ଭୂମିରେ ।

ବିଶାଳ ମୁଦ୍‌ଗର ତହୁଁ ଧରିଲେ ରୁସ୍ତମ
(ଆଉ କେ ତା' ଧରିବାକୁ ହୋଇବ ଭାଜନ !)
ଶାଖାହୀନ ତରୁବର ଭୀମ ପ୍ରଭଞ୍ଜନେ
ଭଗ୍ନ ହୋଇ ପଡ଼େ ଯେବେ ହିମାଳୟ ବନେ
ଆଣଇ ତା ଇରାବତୀ ବିତସ୍ତାର ସ୍ରୋତ
ବୃକ୍ଷହୀନ ଦେଶେ; ତହିଁ ରଚିବାକୁ ପୋତ
ନ ଅନ୍ତ ତା ତୋଳି ନଦୀ ଗର୍ଭୁଁ ହର୍ଷଭରେ
ରକ୍ତ୍ରାକ ଯୋଗେ ନଦୀ-ତୀରବାସୀ ନରେ ।
ହରଇ ତେସନ ସେହି ବିଶାଳ ମୁଦ୍‌ଗର
ସୋରାବଙ୍କୁ ନିକ୍ଷେପିଲେ ତାହା ଶିରପର ।

ଶରବମଣି ଲକ୍ଷ୍ୟ ଦେଲେ ଅନୁକର ଫଣୀ;
ଶମନାବେ ଗର୍ଜ୍ଜିଗଦା ପଡ଼ିଲା ଧରଣୀ ।

ପଡ଼ିଲେ ରୁସ୍ତମ ତହୁଁ ଅରି ପାଶେ ଆସି
ଜାନୁପରେ, ଦୃଢ଼େ ଧରି କଟେବ ବାଲସଣି,
ଘର୍ଷିଲ ମସ୍ତକ, ବାଲୁକାରେ ରୁଦ୍ଧଶ୍ୱାସ ।
ତଥାପି ସୋରାବ ତାଙ୍କୁ ନ କଲେ ବିନାଶ ।
ଫେରି ଯାଇ କରୁ ଦୂର ଦେଖାଇ ସମ୍ମାନ
ଗର୍ବ୍ବି ଅରିମୁଖେ ତହୁଁ କହିଲେ ଏସନ ।
"ଅତ ଦୃଢ଼େ କରିଥିଲ ମୁଦ୍‌ଗର ଗ୍ରହଣ
ମାତ୍ର ସେ ଖସିବା ପାଇଁ ଅଛଇ ଖଜନ
ଗ୍ରୀଷ୍ମକାଳେ ନଦୀ ଜଳ ସ୍ରୋତେ । ଅସ୍ଥି ମୋର
ଖର୍ଜ୍ଜିବ ଏସନ ଶକ୍ତ କାହିଁରୁ ତାହାର ।
କ୍ରୁଦ୍ଧ ମୂର୍ତ୍ତି ନୁହେଁ ଯାତ, ନ ହୁଅ କୁପିତ,
ଉଠ, ଯାଅ, ନ ଜାଣେ ମୁଁ, କପାଁ ଅପଘାତ
ହୁଏ କ୍ରୋଧ; ଛଡ ମୁଖ ତଳେ ଦରଶନ ।
ବୋଲଅଛ ପୂର୍ବେ ତୁମେ ନୁହ ତ ରୁସ୍ତମ ।
କଏ ତେବେ ତୁମ୍ଭେ ? ସିକ୍ତ କରୁଛ ଅନ୍ତର;
ବୟସେ ବାଳକ, ମାତ୍ର ନୁହେ ଏ ସମର
ଶାବକେ ପ୍ରଥ... ମୋର; ଭରିଛୁ ଦର୍ଶନ
ବହୁ ଯୁଦ୍ଧ; କରିଅଛୁ ... ଟେଜ କେତେ ରଣ ।
ମୁମୂର୍ଷୁର ମର୍ମଭେଦୀ କାତର କ୍ରନ୍ଦନ
କେତେ ବ ର ଶୁଣିଅଛୁ ମୋର ଏ ଶ୍ରବଣ
ତଥାପି ନୋହିଛୁ କେବେ ଚିତ୍ତ ବିଚଳିତ
ତେବେ ଆଜ କପାଁ ଏ କ ଘଟେ ବିପରୀତ ?

ଆଜ ଏ କି ନବଭାବ ଜାଗଇ ହୃଦର
ଆସ, ବୃଦ୍ଧବୀର, କ୍ରୋଧ ମନୁ କର ଦୂର ।
ଈଶ୍ବର ଆଦେଶ ଆସ କରିବା ପାଳନ
ଶୂଳ ଗଦା ଅସି ଆଉ କିବା ପ୍ରୟୋଜନ ?
ଶୋଣିତ ସବୁ ଭୂମି ଗର୍ଭେ, ବସି ଏହିସ୍ଥାନେ
ସନ୍ଧି ବନ୍ଧେ ହେବା ବଦ୍ଧ; ପୁଣି ସୁରାପାନେ
ବନ୍ଧୁତ୍ୱ ବନ୍ଧନ ଆମ୍ଭ ହେବ ଦୃଢ଼ୀଭୂତ
ରୁସ୍ତମଙ୍କ କଥା ତାଙ୍କ କରମ ଅଦ୍ଭୁତ
ଢାଳିବ ମୋ କର୍ଣ୍ଣେ, ଧନ୍ୟ ହେବ ମୋ ଶ୍ରବଣ
ବୃଥା ଦ୍ୱନ୍ଦ୍ୱେ ନ ରହିବ ଆଉ ପ୍ରୟୋଜନ ।
ଅନନ୍ତ ତ ଏଥି ବନ୍ଧୁ ସେନା ଶତ୍ରୁଦଳେ
ନିର୍ବିକାରେ ତାଙ୍କ ସଙ୍ଗେ ଯୁଝିପାରେଁ ହେଲେ ।
ତେସନେ ଅନନ୍ତ କେତେ ତାତାର ଗହଣେ
ମିଳନ୍ତୁ ସେ ଆସି ଏଥି ତବ ସଙ୍ଗେ ରଣେ,
ନାହିଁ ତହିଁ ଲଭେ ମାତ୍ର ଶୋଚନା ମୋହର
କରୁଅଛି ନିବେଦନ ଏତିକି ମାତର ।
ତବ ମମ ଦ୍ୱନ୍ଦ୍ୱରଣ ଲଭୁ ଅବସାନ
ରାଜ୍ୟ ତର ସୁଖ ଶାନ୍ତି ବନ୍ଧୁତ୍ୱ ମହାନ ।"

ସୋହ୍ରାବର ବାକ୍ୟାବଳୀ ପଡ଼ନ୍ତେ କର୍ଣ୍ଣରେ
ଉଠିଲେ ଇରାନ ବୀର କମ୍ପିତ ଶରୀରେ ।
ମୁଦ୍‌ଗର ତାଙ୍କର ପଡ଼ି ରହିଲା ଭୂତଳେ
ନେଲେ ଖରତରେ ତୋଳ ଶୂଳ ଦକ୍ଷ କରେ

(ଅଗସ୍ତ୍ୟ ତାରକା ସମ ଯାସ୍ତ ଫଳା ଯାର)
ଯାସ୍ତ ଅସ୍ତ୍ର ଅଶ୍ୱ, ପୁଚ୍ଛ ଗୁଚ୍ଛ କଣ୍ଟର
ଧୂଳି ଧୂସରିତ ହୋଇ ହଣର ମଳିନ,
ବକ୍ଷଦେଶ ଶ୍ରମବଶେ କର୍ମେ ଘନ ଘନ ।
ବଦନୁ ବହଇ ଫେନ ଅବସାଦ ବଶେ
ବାର ବାର ଚେଷ୍ଟାଫଳେ ବଚନ ନ ଆସେ ।
ଭାଷିଲେ ରୁସ୍ତମ ଶେଷେ, "ବାଳିକା ତୁ ଆରେ
କ୍ଷିପ୍ର ଗତି ଦେଖାଉ ତୁ ପଦେ, ନୁହେଁ କରେ ।
କପୋଳେ ଅଳକା   ଳୀ, ମୁଖେ ମଧୁଭାଷ
ନଷ୍ଟ ସମ, ଭୁଲାଇବୁ କରିଅଛୁ ଆଶ
ଆସି ଯୁଦ୍ଧ କର ଏବେ, ତୋର ଘୃଣ୍ୟ ସ୍ୱର
ନ ପଡ଼ିବ ଯେତେ କ୍ଷଣ ମୋର ଶ୍ରବଣକୁହର ।
ମନେ ରଖ ନୁହଇ ଏ ଆଫ୍ରାସିଆବ ଉଦ୍ୟାନ
ତାତାର ବାଳିକା ସଙ୍ଗେ ନୃତ୍ୟେ ନିମଗନ
ଥାଉ ଯହିଁ; ଅଟେ ଏହା ଅକ୍ଷନଦୀ ତୀର
ରଣେ ନୃତ୍ୟ କରୁଅଛୁ ସଂଗତେ ମୋହର ।
ନ ମଣେ ସମର ମୁହିଁ ଶିଶୁକ୍ରୀଡ଼ା ସମ
ନ ମାରିଲେ ଅରି ଦ୍ୱନ୍ଦ୍ୱ ଶେଷ ନୁହେଁ ମମ ।
ନ କହ ସନ୍ଧିର କଥା; ସାହସ ବିକ୍ରମ
ସମର କୌଶଳ ସ୍ମର କର ଆସି ରଣ ।
ନାହିଁ ତୋହ ପ୍ରତି ଛଳେ କରୁଣା ମୋହର
ଦେଇଅଛୁ ଲଜ୍ଜା ମୋର ସୈନ୍ୟଙ୍କ ଆଗର ।

ବାଳକାସୁଲଭ ଚତୁରତା କ୍ଷିପ୍ର ଗତ
ବଳେ, ପାଞ୍ଚିଅଛୁ ଭୁଲାଇବୁ ମୋର ମତ ।”

ରୁସ୍ତମଙ୍କ ଏହି ଖର ଉପହାସ ବାଣୀ
ସତେ ଅବା ଦେଲା ଯୁବା ହୃଦଦେଶ ହାଣି
କ୍ରୋଧେ ଘୋର କରି କୋଷୁଁ ଅସି ନିଷ୍କୋଷିତ
ପରସ୍ପର ଅଭିମୁଖେ ଧାଇଁଲେ ତୁରିତ ।
ଇଗଲ ଯୁଗଳ ଯେହ୍ନେ ଦ୍ରୁତ ବେଗେ ଆସି
ବସନ୍ତି ଦୁହିଁ ଏକ ପକ୍ଷୀପରେ ଝାସି
ପଡ଼ନ୍ତି, ତେସନେ ଆକ୍ରମିଲେ ବେନି ବୀରେ
ଶସ୍ତ୍ର ଧରି ବିନାଶିବା ପାଇଁ ପରସ୍ପରେ ।
ଶସ୍ତ୍ରେ ଶସ୍ତ୍ର ବାଜି ଶବ୍ଦ ଜନ୍ମାଇ ଭୀଷଣ,
ଶୁଭଇ ପ୍ରଭାତ କାଳେ କାନନେ ଯେସନ
କୁଠାରର ଧ୍ୱନି, ଯେବେ ଅତି ବଳବାନ
କାଷ୍ଠଜୀବୀ ହସ୍ତେ ତରୁ ଭଜଇ ପତନ;
ପଡ଼େ ମଡ ମଡ଼ ଶବ୍ଦେ କମ୍ପାଇ ଅବନୀ
ତେସନ ଶୁଭିଲା ଭୀମ ସେ ସମର ଧ୍ୱନି ।

ସହସା ଉଠିଲା ଘନ ଆବରି ଗଗନ
ବୀର ବେନି ଶିରପରେ; ଲୁଚିଲେ ତପନ
ଆସିଲା ପ୍ରବଳ ବାତ୍ୟା, ଉଠି ଧୂଳିରାଶି
ଏ ବେନି ଅମର ବୀରେ ପକାଇଲା ଗ୍ରାସି ।

ମାତ୍ର ଏ ଅଦ୍ଭୁତ କଥା—ଜଳଦର ଛାୟା
ପରଶିଲା ନାହିଁ ଆଉ ସୈନ୍ୟଙ୍କର କାୟା ।
ସର୍ବତ୍ର ଦିଶଇ ରବି ଚମଲ କିରଣ
ନ ଦିଶଇ ଆଉ କାହିଁ ସେ ବାତ୍ୟାର ଚିହ୍ନ ।
ଅମ୍ବୁବକ୍ଷେ ଊର୍ମିମାଳା ତପନ କିରଣେ
ଦିଶଇ ଉଜ୍ଜ୍ୱଳ; ମନେ ଆସଇ ଏସନେ
ରବି ତାହା ଯୋଗ ଦେଲେ ଏ ବିଜୟ ରଣେ
ଯହିଁ ଯୁଝୁଥିଲେ ବେନି ଆରକ୍ତ ନୟନେ
ତେଜି ବକ୍ଷୁଁ ଦୀର୍ଘଶ୍ୱାସ ଘନ ଅନ୍ଧକାରେ
ପ୍ରାଣର ସକଳ ମାୟା ତେଜି ଅବହେଳେ ।

ଆକ୍ରମିଲେ ଭଲ୍ଲ କରେ ବୀରେନ୍ଦ୍ର ରୁସ୍ତମ
ଭେଦିଲା ତା ସୋହ୍ରାବଙ୍କ ବକ୍ଷସ୍ଥିତ ବର୍ମ
ମାତ୍ର ନ ପାରିଲା ତାଙ୍କ ଶରୀର ପରଶି ।
ବ୍ୟର୍ଥ ଚେଷ୍ଟା ଦେଖି ବୀର ବିରକ୍ତି ପ୍ରକାଶି
କଲେ ଭଲ୍ଲ ପରିହାର; ବୀରେନ୍ଦ୍ର ନନ୍ଦନ
ଅସି କରେ ପ୍ରତିପକ୍ଷେ କଲେ ଆକ୍ରମଣ
ଲୌହମୟ ଶିରସ୍ତ୍ରାଣେ କରନ୍ତେ ଆଘାତ
ରମ୍ୟ ଅଶ୍ୱପୁଚ୍ଛ ହେଲା ଭୂତଳେ ଲୁଣ୍ଠିତ ।
ଯେଉଁ ଉଷ୍ଣୀଷର ଚୂଡ଼ା, (ଗଜରବେ, ଆହା,
ମଣ୍ଡିଥିଲେ ଏତେ କାଳ ଶିରସ୍ତ୍ରାଣେ ଯାହା ।
ଆଜି ତାହା ଧରିବକ୍ଷେ ଧୂଳିରେ ଧୂସର )
ଅସିର ଆଘାତେ ହେଲେ ରୁସ୍ତମ ଜର୍ଜର ।

ତହୁ ବୀରମଣି କଲେ ଆନତ ବଦନ
ଘନୀଭୂତ ଅନ୍ଧକାର ଘୋଟିଲା ଗଗନ
ଗମ୍ଭୀର ଘର୍ଘର ନାଦେ ହେଲା ବଜ୍ର ଧ୍ୱନି
ଚମକିଲା ଘନ ବକ୍ଷେ ଦୀପ୍ତ ସୌଦାମିନୀ ।
ଅଶ୍ୱରାଜ ରୁଷ ତହୁଁ ହ୍ରେଷିଲା ଭୈରବେ;
ନୁହଇ ସେ ଅଶ୍ୱ ହ୍ରେଷା—ମୃଗରାଜ ଯେବେ
ମରୁଭୂମେ ବ୍ୟାଧ କରେ ଲଭି ଶଲ୍ୟାଘାତ
ରୁଧିର ଜର୍ଜ୍ଜର ଦେହେ ଭ୍ରମି ଇତସ୍ତତଃ
ନିଶାକାଳେ ନଦୀତଟେ ସଇକତ ପରେ
ତେଜେ ପ୍ରାଣ ଅବଶେଷେ ଗର୍ଜ୍ଜି ଭୟଙ୍କରେ—
ଶୁଭିଲା ସେ ଭୀମ ହ୍ରେଷା ଶ୍ରବଣେ ତେସନ
କମ୍ପିଲେ ତା ଶୁଣି କର୍ଣ୍ଣେ ପ୍ରତିପକ୍ଷଜନ ।
ଅକ୍ଷସ୍ରୋତ ହେଲା ଅବା ଭୟେ ଜଡ଼ୀଭୂତ
କିଏ ନ ଡରିବ ଶୁଣି ସେ ରବ ଅଦ୍ଭୁତ !
କ୍ଷଣେ ମାତ୍ର ନୋହିଲା ସେ ଶବଦେ ଚକିତ
ସୋରାବ ସେ—ଅଗ୍ରେ ଯାଇ କରିଲେ ଆଘାତ,
ନତ କଲେ ଶିର ପୁଣି ବୀରେନ୍ଦ୍ର ରୁସ୍ତମ
ମାତ୍ର ତାଙ୍କ ତୀକ୍ଷ୍ଣ ଅସି କାଚପାତ୍ର ସମ
ଶତଖଣ୍ଡ ହୋଇ ଭଗ୍ନ ପଡ଼ିଲା ଭୂତଳେ
କରମୁଷ୍ଟି ଖଣ୍ଡ ମାତ୍ର ରହିଗଲା କରେ ।
ତୋଳିଲେ ରୁସ୍ତମ ଶିର; ଭୀଷଣ ନୟନ
ହେଲା ପ୍ରଜ୍ୱଳିତ; ଶୂନ୍ୟେ ବୁଲାଇ ବଲ୍ଲମ

ରୁସ୍ତମ "ରୁସ୍ତମ" ବୋଲି କରନ୍ତେ ଚିତ୍କାର
ସେ ରବେ ସୋରାବ ହେଲେ ବିସ୍ମୟେ କାତର ।
ପଶ୍ଚାତେ ପଦେକ ଯାଇ, ପୋଛିଣ ନୟନ
ସମ୍ମୁଖୀନ ମୂର୍ତ୍ତି ଗୋଟି କଲେ ନିରୀକ୍ଷଣ ।
ବିସ୍ମୟ ସନ୍ଦେହ ସ୍ରୋତେ ହୋଇ ଭାସମାନ
ନିକ୍ଷେପିଲେ ଭୂମି ପରେ ଅଙ୍ଗୁ ଅଙ୍ଗତ୍ରାଣ ।
ମୁହୂର୍ତ୍ତେ ବେଦନା ଆସି ବଲ୍ଲମ ଶରୀରେ
ଅସ୍ଥିର ଚରଣେ ବୀର ପଡ଼ିଲେ ଭୂମିରେ ।
ଘନ ଅନ୍ଧକାର ଏବେ ହେଲା ଅପସୃତ
ପ୍ରଭଞ୍ଜନ ବେଗ କ୍ଷଣେ ହେଲା ପ୍ରଶମିତ
ମେଘମୁକ୍ତ ରବି ପୁଣି ରାଜିଲେ ଗଗନେ
ନିରେଖିଲେ ଯୁଦ୍ଧଭୂମି ବେନି ସୈନ୍ୟଗଣେ
ଅକ୍ଷତ ଶରୀରେ ଜୟ ସମରେ ରୁସ୍ତମ
ସୈକତେ ରକ୍ତାକ୍ତ ଦେହେ ସୋରାବ ଶୟାନ ।

ଅବଜ୍ଞା ପୂରିତ ହାସ୍ୟ ପ୍ରକାଶି ରୁସ୍ତମ
କହିଲେ, "ସୋରାବ, ପଣ କରିଥିଲୁ ମନ
ଦ୍ୱନ୍ଦ୍ୱଯୁଦ୍ଧେ ବଧି ଏଥି ପାରସ୍ୟକ ବୀର
ଘେନି ତାର ଅସ୍ତ୍ର ଶସ୍ତ୍ର ତାତାର ଶିବିର
ବିଜୟ ସଙ୍କେତ ରୂପେ, ଦେଖାନ୍ତୁ ସକଳେ
ସ୍ଫୀତ କରି ବକ୍ଷ, ଗର୍ବେ ଭ୍ରମନ୍ତୁ ସସାରେ;
ଅଥବା ରୁସ୍ତମ ସ୍ୱୟଂ ଆସିଥାନ୍ତେ ରଣେ.
ଭୁଲାଇ ତାଙ୍କର ମନ ଚତୁର ବଚନେ

ଦେଉଥାନ୍ତୁ କରେ ତାଙ୍କ ପ୍ରୀତି ଉପହାର
ଯାଆନ୍ତେ ସେ ଫେରି, ଏଥି ନ କରି ସମର ।
ତାତାରସ୍ଥ ବଳେ କହୁ ତୋର ବୀରପଣ,
ବଢନ୍ତ ସ୍ୱଭୂମି ଅବା ବଢ଼ନ୍ତେ ସମ୍ମାନ ।
ଜରାଗ୍ରସ୍ତ ପିତା ତୋର ଶୁଣି ଏ ବୃତ୍ତାନ୍ତ
ହୁଅନ୍ତା ଆନନ୍ଦେ ମଗ୍ନ ! ଏବେ ତୁ ଅଜ୍ଞାତ-
ସୈନିକର ହସ୍ତେ ହତ । ଜୟୀ କରି ରଣେ
ଫେରିଥିଲେ ସ୍ୱଶିବିରେ, ଆତ୍ମୀୟ ସ୍ୱଜନେ
ପ୍ରବୀଣ ଜନକେ ପ୍ରୀତି ଦଅନ୍ତୁ ଅପାର;
ଏବେ ଶ୍ୱାନ ଶିବାଙ୍କର ହେବୁ ପ୍ରିୟତର ।

ନିର୍ଭୀକ ଅନ୍ତରେ ବୀର ଦମ୍ଭଲେ ଉତ୍ତର
"ଅଜ୍ଞାତ ସୈନିକ ତୁମ୍ଭେ: ମାତ୍ର ତୁମ୍ଭର
ଗର୍ବ ଆଡ଼ମ୍ବର ଭରା ଏତେ ଆସ୍ଫାଳନ
ବୃଥା, ଯେଣୁ ସାଧ୍ୟ ନାହିଁ ତୁମ୍ଭେ ମୋ ନିଧନ ।
ରୁସ୍ତମ ନାଶିଲେ ଆଜ ସସୈନ୍ୟ ମୋହର
ତାହା ସଙ୍ଗେ ଚିରଭକ୍ତ ମୋର ଏ ଅନ୍ତର ।
ରୁସ୍ତମଙ୍କ ନାମ ଶୁଣି ହେଉ ବିଚଳିତ
ତେଣୁ ସିନା ରଣାଙ୍ଗନେ ଆଜ ମୁଁ ପତିତ ।
ମିଳିଥିଲେ ତବ ସମ ଶତ ଶତ ବୀରେ
ନ ପାରନ୍ତେ କେବେ ରଣେ ସ୍ପର୍ଶି ମୋ ଶରୀରେ ।
ପଡ଼ିଥାନ୍ତେ ସେ ସବୁରେ ବରଞ୍ଚ ଶବନ
ମଣ୍ଡିଥାନ୍ତ ଢେଲାରୂପେ ସମର ଅଙ୍ଗନ ।

ମାତ୍ର ସେ 'ରୁସ୍ତମ' ନାମ, ତବ ଏ ଆନନ
ବିଚଳିତ କଲା ମୋର ଅଚଞ୍ଚଳ ମନ,
ସକଳ ଶଙ୍କିତ କଲା କରୁଁ ଅପଗତ
ସନ୍ଦେହଦୋଳାରେ ମତ ହେଲା ଆନ୍ଦୋଳିତ,
ଶରୀର ରକ୍ଷକ ବର୍ମ ତୁଅନ୍ତେ ସ୍ଖଳିତ
ନିରସ୍ତ୍ର ଶରୀରେ ଶୂଳ କରିଲି ଆଘାତ ।
ଜାଣେ ନାହିଁ ମୁଖେ ତବ ଦେଖେ କାର ଛାୟା
ଏବେ ସୁଦ୍ଧା ହୁଏ ମନେ ଏ କି ଅବା ମାୟା !
କର ଗର୍ବ ଦେଖି ମୋର ଭାଗ୍ୟ ବିପର୍ଯ୍ୟୟ
ମାତ୍ର ମନେ ରଖିଥାଅ, ଦିନେହିଁ ନିଶ୍ଚୟ
ରୁସ୍ତମ ଜନକ ମୋର ଦେବେ ପ୍ରତିଫଳ ।
ନ ଜାଣେ କେ ଭୂମଣ୍ଡଳେ ତାଙ୍କ ବାହୁବଳ ?
ଅନ୍ୱେଷି ଆସିଛୁ ତାଙ୍କୁ ସମଗ୍ର ଭୁବନ
ପ୍ରତିହିଂସା ସାଧି ନେବେ ତବ ଏ ଜୀବନ ।'

ତୁଙ୍ଗ ଶୈଳମୟ ଦ୍ୱୀପେ ରଚଣ କୁଳାୟ
ବିହଗଦମ୍ପତୀ ସୁଖେ କାଟନ୍ତି ସମୟ ।
ପାଳନ୍ତି ଶାବକ, ବସନ୍ତର ଆଗମନେ;
ବିହଗ ସୁଦୂରେ ଯାଏ ଖାଦ୍ୟ ଅନ୍ୱେଷଣେ,
ଏକାକିନୀ ବିହଗିନୀ ଶାବକ ପାରୁଶେ
ଦେଖି, କ୍ରୂର ବ୍ୟାଧ ଲକ୍ଷି ତାରେ ଶର ପ୍ରେଷେ
ଶରଘାତେ ଯାଏ ଜଡ଼ି ଦୁଃଖିନୀ କାତରେ
ଧରିବା ଆଶାରେ ଧାଏଁ ଶବର ପଛରେ ।

ଆସେ ଫେରି ବିହଙ୍ଗମ, ମୁଖରେ ଆହାର
ଦେଖେ ବିହଗିନୀ ନାହିଁ ଶାବକ ପାଶର ।
ଚକ୍ରାକାରେ ଉଡିଉଡ଼ି ରହି ନୀଡ଼ପରେ
ପ୍ରିୟାକୁ ଭର୍ତ୍ସନା କରେ ଉଚ୍ଚେ ରବଚ୍ଛଳେ;
ଆସିବାକୁ ନୀଡ଼ ପାଶେ କରଇ ସଙ୍କେତ,
ନ ଜାଣେ ସେ ପ୍ରିୟା କିବା ଦୁଃଖେ ନିପତିତ ।
ନ ଜାଣେ ସେ ପ୍ରିୟା ତାର ତେଜିଛି ଜୀବନ
ମଣ୍ଡିଛି ତା ପକ୍ଷିରାଜ କେଉଁ ଦୂର ବନ,
ଉଡ଼ିବ ନାହିଁ ସେ ଆଉ କମ୍ପାଇ ଅମ୍ବର,
ନ ପଡ଼ିବ ହ୍ରଦମାରେ ପ୍ରତିବିମ୍ବ ତାର,
ନ ଉଠିବ ପ୍ରତିଧ୍ୱନି ତାର ଗିରିବନେ
ଅଧମ ବିହଗ ଜାଣି ନ ପାରଇ ମନେ
ହରାଇଛି ଯେଉଁ ନିଧି-ରୁସ୍ତମ ଯେସନ
ନ ପାରିଲେ ଜାଣି, ନାଶି ହୃଦୟ ରତନ ।
ପାର୍ଶ୍ୱେ ପଡ଼ି ରହିଅଛି ମୁମୂର୍ଷୁ ତନୟ
ତଥାପି ନ ଜାଣେ ପିତା ପୁତ୍ର ପରିଚୟ ।
ସନ୍ଦିଗ୍ଧଅନ୍ତରେ ରହି ହୋଇ ଉଦାସୀନ
ଭାଷିଲେ ରୁସ୍ତମ, "ଏ କି ପ୍ରଳାପ ବଚନ ।
କହ 'ପ୍ରତିହିଂସା' 'ପିତା' 'ରୁସ୍ତମ' କେବଳ,
ପରାକ୍ରମୀ ରୁସ୍ତମଙ୍କ ନାହିଁ ଯେ କୁମର ।"

ତହୁଁ କ୍ଷୀଣସ୍ୱରେ କଲେ ସୋରାବ ଉତ୍ତର
"ପୁତ୍ରବାନ୍ ସେତ୍ର, ମୁହିଁ ତାହାଙ୍କ କୁମର ।

ପଡ଼ିବ ଏ ବାର୍ତ୍ତା ତାଙ୍କ ଶ୍ରବଣକୁହର ।
କାହିଁ ସେ ଅଛନ୍ତି, ହାୟ ଅଜ୍ଞାତ ମୋହର !
ଥିବେ କାହିଁ ବହୁ ଦୂରେ—ଶାସୁକ ଯେସନ
ଭେଦିବ ଦାରୁଣ ବାର୍ତ୍ତା ତାଙ୍କର ମରମ,
ଅସ୍ତ୍ର ଶସ୍ତ୍ର ଧରି ତହୁଁ ହୋଇବେ ସଜ୍ଜିତ
ପୁତ୍ର ମୃତ୍ୟୁ-ପ୍ରତିଶୋଧ ସାଧିବା ନିମିତ୍ତ ।
ଭାବି ଦେଖ, ଖେଦ ତାଙ୍କ ହେବ କି ଭୀଷଣ
ଶୁଣି କର୍ଣ୍ଣେ ଏକ ମାତ୍ର ପୁତ୍ରର ନିଧନ,
କି ପ୍ରବଳ ପ୍ରତିହିଂସା ଜାଗିବ ଅନ୍ତରେ ?
ରହନ୍ତା କି ତେତେବେଳ ପରାଣ ଶରୀରେ !
ଦେଖନ୍ତୁ ସେ ପୁତ୍ରଶୋକ; ଜାଗେ ମନେ ମୋର
ପିତୃ ପାଦପଦ୍ମ ଲଗି ଶୋକ ଦୁଃଖ ଘୋର ।
ମାତ୍ରକ ଜନନୀ ଯେନ ତହୁଁ ବଳି ଦୁଃଖ
ସହିଥିବ ସିନା ତାଙ୍କ ଜୀବନର ସୁଖ ।
ଅତ୍ରୁବାଣୀ ତୁମେ ବୃଦ୍ଧ ପିତାଙ୍କ ଗହଣେ
(ଶାସନ୍ତି ଯେ ବଳଶାଳୀ ବୀର ବୁଦ୍ଧିଗଣେ)
ଥିବେ ରହି, ନ ତୋଷିବ ନୟନ ତାଙ୍କର
ସସମ୍ମାନେ ପ୍ରତ୍ୟାଗତ ଯଶସ୍ୱୀକୁମର ।
ରଣ ଅନ୍ତେ ସଙ୍ଗେ ଯେବେ ଜୟଲବ୍ଧ ଧନ
ଦେଇଥାନ୍ତି ତାଙ୍କ ପଦେ, ତୋଷି ତାଙ୍କ ମନ ।
ଜନରବ ନେବ ବହି ଦେଶ ଦେଶାନ୍ତର
ମୋର ଏ ମରଣବାର୍ତ୍ତା—ଜନନୀ ମୋହର

ଶୁଣିବେ, ସୋରାବ ତାର ପରାଣର ଧନ
ଅକ୍ଷତଟେ ଶତ୍ରୁକରେ ଲଭିଛି ନିଧନ
କାହିଁ କେଉଁ ଦୂରଦେଶେ—ସେ ମୂର୍ତ୍ତି ମୋହନ
ନ କରିବ ଆଉ ତାର ନେତ୍ରବିନୋଦନ ।"

ନୀରବ ସୋରାବ—ବହିଯାଏ ନେତ୍ରନୀର
ମାତୃଚିନ୍ତା, ମୃତ୍ୟୁଚିନ୍ତା କରନ୍ତି ଅଧୀର ।

ଶୁଣି ଏକଧ୍ୟାନେ ଧୀର ସୋରାବବଚନ,
ଗଭୀର ଚିନ୍ତାରେ ତହିଁ ହେଲେ ନିମଗନ ।
ଅତି ପରିଚିତ ନାମ ସୋରାବ ବଦନେ
ଶୁଣିଲେ, ତଥାପି ଆସ୍ଥା ନ ଆସଇ ମନେ
'ସୋରାବ ତାଙ୍କର ସୁତ ନାହିଁ ଏଥି ଭ୍ରମ' ।
କୁମାରୀଏ ଲଭିଥିଲା ତାଙ୍କର ଜନମ ।
ଦେଇଥିଲେ ଏ ସମ୍ବାଦ ପ୍ରେୟସୀ ତାଙ୍କର
ଭ୍ରମାତ୍ମକ ନୋହୁ ପାରେ କେବେ ଏ ଖବର ।
(ଭାବିଥିଲା ଅଭାଗିନୀ ଜନନୀ ଅନ୍ତର
ଜାଣିବେ ଜନକ ଯେବେ ଜନ୍ମିଛି କୁମର
ନେବେ କାଢ଼ି ମାତୃକୋଳୁ, ଦେଇଣ ସଙ୍ଗତେ
ବୀରଧର୍ମ ଶିକ୍ଷା ଦେବେ ପାଶେ ବିଧିମତେ ।)
ଭାବିଲେ ରୁସ୍ତମ ପୁଣି ଏମନ ସମ୍ଭବ
ରୁସ୍ତମତନୟ ନାମ ଧରି କରେ ଗର୍ବ

ମିଥ୍ୟାରେ ବାଳକ; ଅବା ଦେଖି ଖାରପଣ
ରୁସ୍ତମ ତନୟୁ ଆଗ୍ୟା ଲୋକେ ଅନ୍ୱେଷଣ
କରିଛନ୍ତି ଏହାପରେ; ତାର ଖର-ଯଶ
ସନ୍ଧର ଲଭିବା ଲାଗି ଜଗତେ ପ୍ରକାଶ ।

ଏହିରୂପେ ଭାସି ଭାସି ଚିନ୍ତାସରିତରେ
ପଡ଼ିଗଲେ ଖରମତି ଶୋକପାରାବାରେ
ଉଚ୍ଛ୍ୱସିତ ଜଳଧିରେ ପୂର୍ଣ୍ଣିମା ନିଶାରେ
ଛଡ଼ି ଉର୍ମ୍ମିମାଳା ଯେଉଁପରି ଧାଏଁ ବେଳାପରେ
ଉଦ୍‌ବେଳିତ ହେଲା ତଥା ରୁସ୍ତମଙ୍କ ମନ ।
ଦୁଃଖେ ଶୋକୋଚ୍ଛ୍ୱାସ ଉଠି ପଡ଼େ ଘନ ଘନ;
ନୟନ ଲୋତକ ବାରି ଜଳ ଜର୍ଜ୍ଜରିତ
ଅବାଧ ଚିନ୍ତାରେ ଚିତ୍ତ ହେଲା ଆନ୍ଦୋଳିତ ।
ଆନନ୍ଦ ଉଲ୍ଲାସ ସର୍ବ ବାଲ୍ୟଗୌରବର
କ୍ରୀଡ଼ା କଉତୁକ ଯେତେ ସଖାମାନଙ୍କର
ଦେଖିଲେ ସେ ସ୍ମୃତିପଟେ; ଦେଖିଲେ ଯେସନେ
ସ୍ୱଗତ କୁହେଳି ଭେଦ କରିଲେ ତପନ
ଗୋପାଳକ ଭଗ୍ନ ହୋଇ ଗିରି ଶୃଙ୍ଗପରେ
ଅନୁକ୍ଷଣ କରଣେ ଯନ୍ତ୍ର ସୁଦୂର ନଗରେ ।
ସ୍ମୃତିପଟେ ଦେଖିଲେ ସେ ଆପଣା ଯୌବନ,
ସୋରାବଜନନୀ, ତୋରଣତ ପୁଷ୍ପସମ,
ବୃଦ୍ଧ ରାଜା ପିତା ତାଙ୍କ, ଅତିଥି ଯାଙ୍କର
ସୋହାଗୁଆନ୍ତି ମନୋହାରାସେ ପଥିକଜନଙ୍କର;

ଦେଖିଥିଲେ ଯେତ୍କ ପୁଣି ଅନନ୍ତ ମନେ
ତାଙ୍କ ଭବେର ଗୁଣବର୍ଣ୍ଣ ଚନସ୍ୱାରିତେନେ;
ବିଶାଳ ପ୍ରାସାଦ, ସର୍ବ୍ବ ମିଳଣ ସକଳେ
କାଟୁଥିଲେ ଗ୍ରୀଷ୍ମକାଳ ମହା ହର୍ଷଭରେ,
ଶିଶିର ସିଞ୍ଚିତ ବନ, ମୃଗୟା ବିହାର
ସୁନ୍ଦର ଶୈଳ ମଧ୍ୟେ ପ୍ରାତଃ ସୁଷମାର !
ନଦେଖିଲେ ଯୁବା ମୃଗ, ଅତୃପ୍ତ ବୟସେ
ହେବ ନକ ପୁଣି ସମ; ସେବିଲ ଲଭସେ
ଶଯ୍ୟାନ, ବଦନ ତାର ପ୍ରିୟ ବରଣନ
କାରୁଣ୍ୟକଣ୍ଠିତ ଯେତେକ ସବ ଅପସନ ।

ଉଦ୍ୟାନରକ୍ଷକ ଯେବେ ନୋହି ସାବଧାନ
ତୃଣଗୁଚ୍ଛି କାଟୁ କାଟୁ ଭବଳ ଭର୍ତ୍ତନ
ସୁବାସିତ ମନୋହର ଉଦ୍ୟାନ କୁସୁମ
ଛିନ୍ନ ହୋଇ ଲଭେ ତୃଣଗୁଚ୍ଛ ପରେ ସ୍ଥାନ;
ତେସନ ପଡ଼ିଛି ରକ୍ତ ସୋରାବ ଧରେରେ
ମୃତ୍ୟୁପଥେ, ସଇଭଳ ଆସ୍ତରଣ ପରେ ।

ଶୋକଶ୍ରଦ୍ଧବଦନେ ଚାହୁଁ ବସିଲେ ରୁସ୍ତମ
ନଦେଖି ଅବୁଲନେଟେ ସୋରାବ ବଦନ,
"ଧନ୍ୟ ପୁଷ୍ଟ-ରତ୍ନ ତୁମ୍ଭ, ରୁସ୍ତମ ତନୟ
ହୋଇଥିଲେ ଗର୍ବ ସେତ୍କ କରନ୍ତେ ଅଶ୍ରୁଯୁ ।

ସକଳ ଆଶର ଦେଇଅଛନ୍ତି ତାହାଠାରେ
ମାତ୍ର ବତ୍ସ, ପଡ଼ିଅଛ ଭ୍ରମପାରାବାରେ
ଅବା ମିଥ୍ୟା ଲୋକବାକ୍ୟେ ଯାଇଅଛ ଭୁଲି,
ମଣ ଆପଣାକୁ ରୁସ୍ତମର ସୁତ ବୋଲି ।
ରୁସ୍ତମର ନାହିଁ ପୁତ୍ର; ଗୋଟିଏ ସନ୍ତାନ
ତାର, କନ୍ୟା ସେହୁ—ଏକ ବନା ନାହିଁ ଆନ ।
ଏବେ ସେ ଜନନୀ ପାଶେ ଥିବ ଗୃହକର୍ମେ;
ନ ଥିବ ସେ କେବେ ଶବ୍ଦ ଆନ୍ଦୁ ସ୍ୱପନେ;
ଏହି ଦ୍ୱନ୍ଦ୍ୱଯୁଦ୍ଧ କଥା, ଏହି ପରିଣାମ
ପରଶି ନ ଥିବ ତାର କୋମଳ ପରାଣ ।"

ଅସହ୍ୟ ହୋଇଲା କ୍ରମେ ଶୂଳର ଯନ୍ତ୍ରଣା
ଶୂଳର କଢ଼ିବାର ଲାଗି ହୋଇଲା କାମନା,
ମୁକ୍ତପଥେ ରକ୍ତଧାର ହୋଇ ପ୍ରବାହିତ
ଘଟିବ ଯେସନେ ତାର ମରଣ ତ୍ୱରିତ ।
ତହୁଁ ବଳ ଇଚ୍ଛା ହେଲା ମୁମୂର୍ଷୁ ଅନ୍ତରେ
ବୁଝାଇବ ସତ୍ୟ କଥା ଦୁର୍ଦ୍ଦାନ୍ତ ଅରିରେ;
ଦୃଢ଼େ ଉଠି, ଭର ଦେଇ ଏକଭୁଜ ପରେ
କୋଇଲେ ରୁସ୍ତମେ ଧୃଷ୍ଟେ ସୋରାବ ଗିରେ,
"ନ କରୁଛ ବାକ୍ୟେ ମୋର ବିଶ୍ୱାସ ସ୍ଥାପନ
ମିଥ୍ୟା କଥା କହିଲ କି ମୁମୂର୍ଷୁ ବଦନ ?
ନ ଜାଣେ ଅନୃତ ବାକ୍ୟ କେବେହେଁ ଜୀବନେ
ମିଥ୍ୟା କଥା କହିବି କି ଏହି ଶେଷ କ୍ଷଣେ ?

ଶୁଣ ଆନ ଏକ କଥା, ପୂର୍ବେ ମୋ ଜନକ
ଜନନୀର କରେ ଦେଇ ସ୍ୱକୀୟ ସନ୍ତକ
ଆଦେଶିଣଥିଲେ, ଯେବେ ଜନ୍ମିବ ସନ୍ତାନ
ତା ଶରୀରେ କରିବାକୁ ସେ ଛବି ଅଙ୍କନ ।
ଯେଉଁ ଛବି ଚିହ୍ନିଥିଲେ ଜନନୀ ମୋହର
ଦେଖ ତାହା ରହିଅଛି ମୋର ଭୁଜପର ।"

ଏ ବଚନେ ରୁସ୍ତମଙ୍କ ବଦନମଣ୍ଡଳ
ବିଷାଦ କାତରେ ହେଲା ତକ୍ଷଣେ ପାଣ୍ଡୁର
ଜାନୁ ଦ୍ୱୟ ହେଲା ଘନ ଘନ ପ୍ରକମ୍ପିତ
କଲେ ବକ୍ଷ ପରେ ବାର ବାର କରାଘାତ ।
ରୌଦ୍ରମୟ ବର୍ମେ ବାଜି ହେଲା ମହାଘୋଷ
ଧରିଲେ ଅପର କରେ ଚାପି ହୃଦଦେଶ ।

ଭାଷିଲେ ରୁସ୍ତମ ତହୁଁ କରୁଣକଣ୍ଠରେ
"ଦେଖାଇବ ଯେବେ ଅଙ୍କଲେଖା ତବ କରେ
ଜାଣିବ ନିଶ୍ଚୟ ତୁମ୍ଭେ ରୁସ୍ତମ ସନ୍ତାନ
ମିଥ୍ୟା କେବେ ନୋହୁ ପାରେ ଏସନ ପ୍ରମାଣ ।"

ବ୍ୟସ୍ତଭାବେ ବୀରମଣି ଦୁର୍ବଳ କରରେ
ଫିଟାଇଲେ ଦୃଢ଼ବନ୍ଧ କଟିବନ୍ଧ ନିଜେ ।
ସ୍କନ୍ଧମୂଳେ ବାହୁପରେ ଅଛି ବିରାଜିତ
ଗ୍ରିଫିନର ଚିହ୍ନ ଏକ ସିନ୍ଦୂରେ ଅଙ୍କିତ ।

ସେଦିନର ଶିଳ୍ପକର କରଇ ଯେସନ
ପୋର୍ସିଲିନ ପାତ୍ରେ କାରୁକାର୍ଯ୍ୟ ବିରଚନ
ଶ୍ୱେତ ସିନ୍ଦୂରର ବିନ୍ଦୁ ସୂଚୀର ଅଗ୍ରରେ
ପ୍ରତ୍ୟୁଷରୁଁ ପ୍ରଦୋଷ ଯାଏ, ପୁନଶ୍ଚ ନକ୍ସାରେ;
ଯପାଲେଟେ ବସି ହୁଏ କର୍ମେ ଅଗ୍ରସର
ଦେବ ବୋଲି ସନ୍ତୋଷର କରେ ଉପହାର;
ସତେ କି ଚେତନ ଚିହ୍ନ କହୁଛି ଅଙ୍କନ
ଗ୍ରିଫିନର ପ୍ରତିକୃତି—ଏତେ ସୁଶୋଭନ ।

(ରୁସ୍ତମଙ୍କ ପିତା ଯେବେ ଅତି ଶୈଶବରେ
ତ୍ୟକ୍ତ ହୋଇ ପଡ଼ିଥିଲେ ପର୍ବତକନ୍ଦରେ
ଦେଖିଲା ଗ୍ରିଫିନ ଏକ; ଲାଳନ ପାଳନ
କରି ରକ୍ଷା କରିଥିଲା ତାଙ୍କର ଜୀବନ ।
କୃତଜ୍ଞତାବଶେ ସେହି ଗ୍ରିଫିନ ମୂରତି
ସନ୍ତକ ସ୍ୱରୂପ ନେଲେ ରୁସ୍ତମ ସୁମତି । )
ଦେଖାଇ ସେ ଚିହ୍ନ ଘୋର ବିଷଣ୍ଣବଦନେ
ଅନାଇ ରହିଲେ ସେହି ପିତୃଦତ୍ତ ଚିହ୍ନେ ।
ରୁସ୍ତମ ବଦନେ ଶୁଣି କହିଲେ ବଚନ,
"କି କହୁଛ, ହେଲ ଏବେ ସଂଶୟମୋଚନ ?
ରୁସ୍ତମ ତନୟ ମୁହିଁ ଅବା ଆଉ କା'ର ?"
ମରବ ରହିଲେ କହି ଏତିକି ମାତର ।

କି ପୁରୁଷ ବାକ୍ୟ ଆଉ କହିଁ ବଦନେ
ସୋରାବେ ରହିଲେ ଚାହିଁ ନିବଦ୍ଧନୟନେ ।

କ୍ଷଣକାଳ ପରେ ତହୁଁ ଭାଷିଲେ କାତରେ
"ହେ ବତ୍ସ, ମୁହିଁ ତୋ ପିତା"—ଏତେ ରୁଦ୍ଧସ୍ୱରେ ।
ଘନ ଅନ୍ଧକାର ସତେ ଘୋଟିଲା ଗଗନ
ଭ୍ରମିଗଲା ଚକ୍ରବତ ଅବା ଏ ଭୁବନ,
ପଡ଼ିଲେ ଭୂମିରେ ସାର ହୋଇ ଅଚେତନ,
ଶ୍ୱସ୍ତର ଦରଜ ଅବା ଗଲା କି ଜୀବନ ?
ବକ୍ଷ ପରେ ଭର ଦେଇ କଷ୍ଟେ ପିତା ପାଶେ
ଯାଇ ଘେର; ପିତୃ ଗଳା ଧରିଲେ ଆଶ୍ଳେଷେ ।
ଦେଇ ବାର ବାର ତାଙ୍କ ଅଧରେ ଚୁମ୍ବନ
କପୋଳେ କମ୍ପିତ କର କରିଲେ ସ୍ଥାପନ ।
ସଞ୍ଜ୍ଞା ଲଭି ଘାର ତହୁଁ ମେଲିଲେ ନୟନ
ଆକୁଳେ ବାଳୁକା ହସ୍ତେ କରିଲେ ଧାରଣ ।
ଫିଙ୍ଗି ତାହା ଶିରେ ପୁଣି କରି କରାଘାତ
ବଢାଇଲେ ମୁଖ, ବକ୍ଷ, ଶ୍ମଶ୍ରୁ, ଅସ୍ତଶସ୍ତ ।
ହୃଦୁ ବାହାରିଲା ଆର୍ତ୍ତନାଦ ଭୟଙ୍କର
ଶାଣିତ କୃପାଣ ହସ୍ତେ ଧରିଲେ ସତ୍ୱର
ସ୍ୱହସ୍ତେ ସାଧିବା ପାଇଁ ନିଜର ନିଧନ
ସୋହ୍ରବ ବାରିଲେ ତାହା କରିଣ ଧାରଣ ।
ଭାଷିଲେ ସେ, "ଖଣ୍ଡିଛୁ କେ ଧରାରେ ନିସୃଷ୍ଟ
ନିସୃତର ବଶେ ଆଜ ଲଭିଲି ଏ ଗତି ।
ବିଧିବ ଲେଖିଥିଲା ଯାହା କପାଳେ ମୋହର
ଘଟିଲା ତା, ତୁମ୍ଭେ ସିନା ନିମିତ୍ତ ମାତର ।

ପ୍ରଥମ ଦର୍ଶନ କାଳେ କହିଲା ଅନ୍ତର
ତୁମ୍ଭେହିଁ ରୁସ୍ତମ ଖ୍ୟାତ ଜନକ ମୋହର ।
ଜାଣେଁ ତୁମ୍ଭ ହୃଦ ହୋଇଥିଲା ବିଚଳିତ
ହୃଦର ସେ ଭାବ କଲା ବିଧି ବିଦଳିତ;
ଦ୍ୱନ୍ଦ୍ୱଯୁଦ୍ଧେ ନଯୋଜିଲା ବିଧି ଯେବେ ଜନ
କରେ ପୁତ୍ର ତାର ଲଭିଲା ନିଧନ ।
କହି ସେ କାହାଣୀ ଆଜ କିବା ପ୍ରୟୋଜନ ?
ଲଭିଛି ଅନ୍ତିମେ ପିତୃଚରଣ ଦର୍ଶନ ।
ଭୁଞ୍ଜେ ସେ ଅନନ୍ତ ସୁଖ, ଆସ ପାଶେ ବସ
ସଇକତ ପରେ, ଦିଅ ଅଧମେ ଆଶ୍ଳେଷ,
ଚୁମ୍ବି ଏ କପୋଳ, ଧୋଇଦିଅ ଅଶ୍ରୁଜଳେ
ପୁତ୍ର ବୋଲି ସମ୍ବୋଧନ କର ଅଧମରେ ।
ନାହିଁ ନାହିଁ ଆଉ ବେଳ, ଏକ୍ଷଣି ଜୀବନ-
ପ୍ରଦୀପ ମୋହର ପରା ଲଭିବ ନିର୍ବାଣ ।
ଆସିଥିଲି ରଣକ୍ଷେତ୍ରେ ଚପଳା ସମାନ
ଝଟିକା ପରାୟେ ତହୁଁ କରୁଛି ପ୍ରୟାଣ ।
ଲେଖିଥିଲା ବିଧି ଏହା କପାଳେ ମୋହର
ବିଧିଲିପି ଖଣ୍ଡିବାକୁ ଶକତି କାହାର ?"

ଏ ବଚନେ ରୁସ୍ତମଙ୍କ ରୁଦ୍ଧ ଶୋକସ୍ରୋତ
ନୟନର ଝରରୂପେ ହେଲା ପ୍ରବାହିତ ।
ଦୃଢ ବାହୁ-ଯୁଗେ ପୁତ୍ରେ କରି ଆଲିଙ୍ଗନ,
ଦେଲେ ସ୍ନେହେ ବାର ବାର କପୋଳେ ଚୁମ୍ବନ ।

ରୁସ୍ତମ ନୟନେ ନୀର ଦେଖି ସୈନ୍ୟଗଣ
ଦୂରସ୍ଥ ଭଜିଲେ ସର୍ବେ, ରୁକ୍ଷ ତୁରଙ୍ଗମ
ଅବନତ କରି ଶିର ସଞ୍ଚାଳି କେଶର
ସୈନ୍ୟଦଳ ପାଶେ ଆସି ମିଳିଲା ସତ୍ୱର ।
ନୀରବ ବିଷାଦେ ଧୀରେ ସଞ୍ଚାଳି ବଦନ
ପଚାରିଲା ସର୍ବେ ଅବା ବିଷାଦ କାରଣ ।
ସମବେଦନାରେ ଝରି ନୟନୁ ତାହାର
ବହିଗଲା ଧୀରେ ଧୀରେ ଉଷ୍ଣ ଅଶ୍ରୁଧାର ।

ତା ଦେଖି ରୁସ୍ତମ ତହୁଁ କର୍କଶ ବଚନେ
ତୁରଙ୍ଗମେ ଲକ୍ଷ କରି ଭାଷିଲେ ଏସନେ,
“ହୋଇଥାନ୍ତା ଆଜ ଯଦ ଭଗ୍ନ ତୋର ପଦ
ଆସି ମୁଁ ନ ଥାନ୍ତି, ନୋହିଥାନ୍ତା ଏ ବିପଦ ।”
ସୋରବ ଭାଷିଲେ ରୁକ୍ଷେ କରି ନିରୀକ୍ଷଣ
“ଏହି କି ସେ ରୁକ୍ଷ, ଶୁଣିଥିଲି ଯାର ନାମ
ଶିଶୁକାଳେ ମାତୃଦେବୀମୁଖେ—କେତେ ବାର
ଆହେ ରୁକ୍ଷ, କହିଛନ୍ତି ଜନନୀ ମୋହର
ସୁଲକ୍ଷଣ ପିତାଙ୍କ ତୁହି ତୁରଙ୍ଗ ସୁଲକ୍ଷଣ
ପିତା ସଙ୍ଗ ଦିନେ ତୋତେ କରିବ ଦର୍ଶନ ।
ଆହେ ରୁକ୍ଷ, ଆସ ଆସ ବାରେ ପାଶେ ମୋର
ପରଶେ ମରଣକାଳେ କେଶର ତୋହର ।
ବହୁ ଭାଗ୍ୟବାନ ତୁହି କରିଛୁ ସେବନ
ଜନ୍ମଭୂମି ସମୀରଣ, କରିଛୁ ଗମନ

ନ ପଡ଼ିବ ଯହିଁ ମୋର ଏ ହୀନ ଚରଣ
ସିସ୍ତାନ ସୈକତ ପଥରେ କରୁଛୁ ଭ୍ରମଣ
ଜାର ହ୍ରଦତଟେ ପୁଣି ହେମନ୍ଦପୁଳିନେ
ଭ୍ରମିଅଛୁ କେତେ ବାର ଆନନ୍ଦିତମନେ ।
ପାଶେ ଉଭ ହୋଇ ଜାଲ ପିତାମହ ମୋର
ଗ୍ରୀବାରେ ଆଘାତ କରି କରନ୍ତି ଆଦର ।
ସୁରସିକ୍ତ ଖାଦ୍ୟ ସ୍ୱର୍ଣ୍ଣପାତ୍ରରେ ଭୋଜନ
କରାଇ କହନ୍ତି ତୋତେ ଏସନ ବଚନ
'ନବ୍ୟପଦେ ରଣକ୍ଷେତ୍ରେ ବଳିବୁ ରୁସ୍ତମେ'
ମନେ ପଡ଼େ କେତେ କଥା, ହାୟ ଆଜି ମନେ
ଦେଖି ନ ପାରିଲି ଆହା ତାହାଙ୍କୁ ଜୀବନେ
ନ ପଡ଼ିଲା ତାଙ୍କ ସୌଧ ଆଜି ଏ ନୟନେ ।
ହେମନ୍ଦର ସ୍ୱଚ୍ଛ ନୀରେ ତୃଷା ନିବାରଣ
କରିବା ବାସନା ମୋର ନୋହିଲା ପୂରଣ ।
ପିତୃ ଅରିଦଳେ ରହି ଦେଖିଛୁ ମାତର
ମରୁଭୂମି ପରେ ଆଫ୍ରିସିଆର ନଗର
ବୋଖାର, ସମରକନ୍ଦ, ଖିବା ଆଦି କେତେ
ତୁରସ୍କ ଶିବିର ଅବା, ଗଲେ ଯା ସୈକତେ ।
ମୋର୍ଗାବ, ତେଜନ୍ଦ ପୁଣି କୋହିକର ନୀର
ମରୁଦେଶେ ନିବାରୁଛି ପିପାସା ମୋହର,
ଯା ତଟରେ କାଲ୍‌ମୁକେ (୧) ଦଳବଳ ମେଷ ଘେନି
ବିଚରଣ କରୁଥାନ୍ତି ଦିବସ ରଜନୀ ।

(1) Kalmuks

କରିଛୁ ଏ ଅଶ୍ରୁନଦୀ ପୀତ ମାତୃପାନ
ଯାର ତଟେ ଆଜ ମୋର ଯାଉଛି ପରାଣ ।”

ପଡ଼ନ୍ତେ ଶ୍ରବଣେ ସୋରାବର ଏହି ବାଣୀ
ଆର୍ତ୍ତନାଦ କରି ତହୁଁ ଭାଷେ ବୀରମଣି
“ହାୟ, ବହିଯାଉ ଅଶ୍ରୁସ୍ରୋତ ମୋହ ପରେ
ଲୁଚୁ ମୋର ଶିର ପୀତ ରେଣୁରାଶି ତଳେ ।

ଭାଷିଲେ ସୋରାବ ପୁଣି ବିନୀତ ବଚନେ
“ନ ଆଣ ଏସନ ବାଣୀ ଆଉ ଏ ବଦନେ ।
କେହି ଜନ୍ମେ ଏ ଜଗତେ ହୁଏ ସୁମହାନ
ଚିରଦିନ କରେ ଧରା ତାର କୀର୍ତ୍ତିଗାନ ।
କେହି ବା ଜନମେ ଭବେ, ରହି ଅନ୍ଧକାରେ
ଅନ୍ଧାରେ ମରଇ କେହି ନ ଜାଣଇ ତାରେ ।
ଅସମ୍ପନ୍ନ କର୍ମ ମମ କରି ସମାପନ
ଲଭ ଭବତଳେ ଅଦ୍ୱିଶାସ୍ତ ଯଶୋଧନ ।
ତୁମ୍ଭେ ମୋର ପିତା ତେଣୁ ଗୌରବେ ତୁମର
ବଢ଼ିବ ଗୌରବ ମମ, ନ ହୁଅ କାତର !
କିନ୍ତୁ ପିତଃ, କର ମୋର ପ୍ରାର୍ଥନା ଶ୍ରବଣ
ଏହି ଯେ ଅଗଣ୍ୟ ସେନା କରୁଛ ଦର୍ଶନ
ବିନାଶ ନ କର ତାଙ୍କୁ, ମତେ ଅନୁସରି
ଆସିଥିଲେ ମୋର ଆଶା ଭରସା ଆଦରି ।

ମୋର ଭାଗ୍ୟ ଫଳେ ତାଙ୍କ ଭାଗ୍ୟ ସମ୍ମିଳିତ;
ଯାଆନ୍ତୁ ସେ ଫେରି, ଶାନ୍ତ ହେଉ ପ୍ରତିଷ୍ଠିତ ।
ପିତୃଦେବ, ନ ପଠାଅ ଶମନସଦନେ
ମମ ସହ ନିର୍ଦ୍ଦୋଷ ଏ ଅନୁଚରଗଣେ ।
ସଙ୍ଗେ ନେଇ ଶବ ମୋର ସିସ୍ତାନ ନଗରେ
ଶୁଆଇଣ ଦେବ ଗୃହ ମଧ୍ୟେ ଶଯ୍ୟା ପରେ ।
ଶ୍ୱମ ଶୁଭ୍ରକେଶ ପିତାମହ ବନ୍ଧୁଜନ
ମିଳି ସର୍ବେ ମୋହ ଲଗି କରିବେ କ୍ରନ୍ଦନ ।
ଜନମଭୂମିର ସେହି ମଧୁର କୋଳରେ;
ନିକ୍ଷିବ ମୋ ମରଦେହ ଆଦରେ କବରେ ।
ସୁବିଶାଳ କୀର୍ତ୍ତିସ୍ତମ୍ଭ କରିବ ନିର୍ମାଣ
ତହିଁ ପରେ, କରିବ ଯା ଦୃଷ୍ଟି ଆକର୍ଷଣ ।
ଯାଇଁ ମରୁଭୂମିପଥେ ପଥଶ୍ରାନ୍ତଗଣେ—
ଦେଖି ତାହା ବୋଲାବୋଲି ହୋଇବେ ଏମନେ,
"ଏହି ସ୍ଥାନେ ଅଛି ଚିରନିଦ୍ରାରେ ଶୟାନ
ସୋରାବ, ବୀରାଗ୍ରଗଣ୍ୟ ରୁସ୍ତମସନ୍ତାନ ।
ପିତୃକରେ ଭ୍ରମ ବଶେ ଗଲା ଯା ପରାଣ
ବିସ୍ମୃତି-ଗର୍ଭେ ଲୋପ ନୋହିବ ମୋ ନାମ ।"

କାତରବଚନେ ତହୁଁ ଭାଷିଲେ ରୁସ୍ତମ
"ତୋର ଏ ଅନ୍ତିମ ବାଞ୍ଛା ହୋଇବ ପୂରଣ ।
ହେ ପୁତ୍ର ସୋରାବ, ଭସ୍ମ କରି ଏ ଶିବିର
ସୈନ୍ୟଦଳେ ନେଇ ଫେରିବି ସିସ୍ତାନ ନଗର ।

ଘେନ ସଙ୍ଗେ ତୋତେ ତହିଁ ରଖି ଶଯ୍ୟାପରେ
ଢାଳିବ ନୟନବାରି ପିତାଙ୍କ ସଙ୍ଗରେ ।
ତୋର ବନ୍ଧୁଗଣ ଆସି କରିବେ ରୋଦନ
ଭଜିବୁ ଅନ୍ତମେ ତୋର ପ୍ରିୟ ଜନ୍ମସ୍ଥାନ ।
ଉଚ୍ଚ ସମାଧି ପରେ ସ୍ତୂପ ବିରଚନ
ଦୂରୁ ଯା ପଥିକଗଣ କରିବେ ଦର୍ଶନ ।
ବସୁନ୍ଧରରେ କେବେ ନ ଭଜିବ ଲୟ
ତୋହସମ ଗୁଣଶୀଳ ରୁସ୍ତମ-ତନୟ ।
ଫେରିଯାନ୍ତୁ ଅକ୍ଷପାରେ ତୋର ଅନୁଚରେ
ଯାଉ ଲୁଚି ହିଂସା, ରହୁ ଶାନ୍ତି ଏ ଧରାରେ ।
କି ଲାଭ ମୋହର କହ ବିନାଶସାଧନେ ?
ଇଚ୍ଛା ହୁଏ, ଫେରିଆସି ପାରନ୍ତେ ଜୀବନେ
ମୃତ ଶତ୍ରୁଗଣ ମମ, ପରାକ୍ରାନ୍ତ ବୀରେ
ଯାରେ ନାଶି ଉଠିଛି ମୁଁ ଯଶପଦବୀରେ ।
ନୋହି ବୀର, ହୋଇଥାନ୍ତି ଇତର ମାନବ
ସାମାନ୍ୟ ସୈନିକ ପଛେ, ନ ଥାନ୍ତା ବିଭବ
ଯଶ କୀର୍ତ୍ତି ସବୁ ମୋର ଭଜନ୍ତା ବିଲୟ
ଜୀବନେ ଫେରନ୍ତା ଏକା ମୋହର ତନୟ ।
ନୋହିଲେ ମୁଁ ପଡ଼ିଥାନ୍ତି ଆଜ ଏ ଧୂଳିରେ
ଅଜ୍ଞାତ ଆଘାତେ ତୋର ମରଣଶଯ୍ୟାରେ
ନ ଅନୁଭୁ ମୋତେ ବହି ସିସ୍ତାନ ନଗର
ଲଭନ୍ତି ମୁଁ ବୃଦ୍ଧ ପିତାଙ୍କର ଅଶ୍ରୁଜଳ;

କହନ୍ତେ ସେ, 'ହାୟ୍ ବତ୍ସ, ନୁହେ ଶୋକ ମୋର
ଗୁରୁ, ଯେଣୁ ଇଚ୍ଛାକୃତ ମରଣ ତୋହର ।'
ରଣକ୍ଷେତ୍ରେ ରକ୍ତସ୍ରୋତେ ଗଲା ମୋ ଯୌବନ
ପ୍ରୌଢ଼ ବୟସ୍ କାଳ ଏବେ କାଟିଲି ଏସନ ;
ନ ଯିବ ମୋହର ଏହୁ ରଣଗତ ପ୍ରାଣ
ରକ୍ତେ ଜରଜର ହେବ ଯାବତ ଜୀବନ ।"

ଜୀବନର ପଥପ୍ରାନ୍ତେ ପଡ଼ି ବୀରବର
କହିଲେ, "ରକ୍ତାକ୍ତ ପିତଃ, ଜୀବନ ତୁମ୍ଭର ।
ଲଭିବ ନିଶ୍ଚୟ ଶାନ୍ତି ତବ ଏ ପରାଣ
ଦିନେ ହେଲେ କେବେ, ମାତ୍ର ନୁହେ ବର୍ତ୍ତମାନ ।
ସ୍ଥାପି ଯେବେ ପ୍ରଭୁ ଦେହ ସମାଧିମନ୍ଦିରେ
ସ୍ୱଦେଶେ ଫେରିବ ଘୋର ସାଗରର ପାରେ
ଖସରୁର ବନ୍ଧୁ ସହ ମାଜାମୁବକ୍ଷରେ
କେତନ ଶୋଭିତ ଗୃହୁ ବହିଏ ଉପରେ ।
ହୃଦୟେ ରଜବ ତବ ଶାନ୍ତି ସୁବିମଳ
ଶାନ୍ତି ଶୋକ କର୍ ନିଅ ଅସ୍ଥିର ଅନ୍ତର ।"

ନିରେଖି ସୋରାବ ମୁଖ ଭାଷିଲେ ରୁସ୍ତମ
"କରୁ ସେ ସୁଦିନ ମୋର ଶୀଘ୍ର ଆଗମନ;
ହେଉ ସେହି ପାରିବାର ଘାର ସୁଉଚ୍ଚର
ସ୍ମୃତି ରହିଥିବ ମୁହିଁ ସେ ଶୁଭବାସର;

ସତ୍ତ୍ୱଥିବ ଅନ୍ତରର ଏ ଶବ୍ଦ ଯାତନା
ମୋହ ସ୍ୱର୍ଗ ଭୁଞ୍ଜିବ କେ ଆନ ମୋହ ବିନା !"

ମୃଦୁହାସ୍ୟସହ ଦୃଷ୍ଟି ଜନକବଦନ
ପାର୍ଶ୍ୱଦେଶୁଁ କଲେ ବୀର ଶୂଳ ଆକର୍ଷଣ ।
ବହିଲା ରୁଧିର ଧାର ପ୍ରବଳ ବେଗରେ
ପ୍ରାଣ-ସ୍ରୋତ ବହିଗଲା ତାହା ସଙ୍ଗତରେ ।
ପାଣ୍ଡୁର ଦିଶିଲା ଅଙ୍ଗ ହୁମାମ ଯେସନ
ସ୍ୱଚ୍ଛ ସ୍ୱଚ୍ଛ ଅଙ୍ଗଶିରା ହେଲା ବିମଳିନ ।
ସଦ୍ୟ ବୃନ୍ତ-ଚ୍ୟୁତ ପୁଷ୍ପ ଅବା ଶିଶୁକରେ
ହୋଇ ବିଦଳିତ ପଡ଼ିଅଛି ନଖାଗ୍ରରେ ।
ଶିର ହେଲା ଅବନତ, ଶିଥିଳ ଶରୀର
ଜଘନ ନିଶ୍ଚଳ ଭାବେ ରହିଲା ଭୂମିର ।
ନେତ୍ର-ପତ୍ର ଯେଉଁ କ୍ରମେ ହେଲା ନିମୀଳିତ
ମୃଦୁ ମୃଦୁତର ଶ୍ୱାସ ହେଲା ପ୍ରବାହିତ;
ନିର୍ବାଣ ଉନ୍ମୁଖ ଦୀପ ଯଥା ଉଦ୍ଦୀପିତ;
ହୁଏ, ତଥା ସର୍ବଅଙ୍ଗ କରି ପ୍ରକମ୍ପିତ
ଉଠିଲା ହୃଦୟଦେଶୁଁ ଘୋର ଊର୍ଦ୍ଧ୍ୱଶ୍ୱାସ;
(ଶ୍ୱାସ ନୁହେଁ ସେ ଯେ ମୁମୂର୍ଷୁର ଅଟ୍ଟହାସ)
ନିମିଷେକ ଲାଗି ହେଲା ଚକ୍ଷୁ ଉନ୍ମୀଳନ
ଅବଲୋକେ କ୍ଷଣକ୍ଷଣେ ଜନକବଦନ
ଚିରଦିନ ପାଇଁ ପୁଣି ହୋଇଲା ମୁଦ୍ରିତ
ଗଲା ଆତ୍ମା କରି ନରଦେହ ନିପତିତ ।

ଏ ଯୌବନ, ଏ ଲାବଣ୍ୟ ସୁଖମୟ ଧରା
ତେଜିବାକୁ ମନଭଙ୍ଗ ପରକାଶି ପରା
ରକ୍ତାକ୍ତ ଶରୀର ପଡ଼ି ରହିଲା ଧୂଳିରେ
ଆସୀନ ରୁସ୍ତମ ମୃତ ପୁତ୍ର ପାର୍ଶ୍ୱରେ ।

ଜାମଶେଦ ପ୍ରାସାଦର ଉଚ୍ଚ ସୁକଠିନ
କୃଷ୍ଣବର୍ଣ୍ଣ ସ୍ତମ୍ଭାବଳୀ ଲଭି କି ପତନ
ପଡ଼ିଛି ସୋପାନସହ ଶଇଳ ପାର୍ଶ୍ୱେ ;
ରୁସ୍ତମ ବସନ୍ତି ତଥା ତନୟର ପାଶେ ।

ନିସ୍ତବ୍ଧ ସେ ମରୁଦେଶେ ସନ୍ଧ୍ୟା ସମାଗତ
ସକଳେ ନିବିଡ଼ ତମ ଜାଲ ଆଚ୍ଛାଦିତ;
ଉଠିଲା କୁହେଳି ନିଶାଗମେ ଅକ୍ଷପରେ
ଫେରିଲେ ସୈନିକଗଣ ଯେଝା ବସ୍ତ୍ରାଗାରେ ।

ଅସ୍ପଷ୍ଟ ତାହାଙ୍କ ଧ୍ୱନି ବାଜିଲା ଶ୍ରବଣେ
ବିରାଟ ସମିତି ଶେଷେ ଶୁଭେ ଶବ୍ଦ ଯେସନ୍ତେ;
ପ୍ରତି ପଟ୍ଟବାସେ ହେଲା ଦୀପ ପ୍ରଜ୍ୱଳିତ
କୁହେଳିକାରାଶି ଭେଦ ହୁଏ ପ୍ରକଟିତ ।
ଅତିକ୍ରମି ପ୍ରାନ୍ତରବକ୍ଷେ ପାରସ୍ୟବାହିନୀ
ଗଲେ ବାସେ ଅନୁସରି ଦକ୍ଷିଣ ସରଣୀ ।
ତାତାରସୈନ୍ୟେ ଅଗ୍ନିଘରେ କରିଲେ ଭୋଜନ
ରହିଲେ ସେ ନଦୀତଟେ 'ସୋହ୍‌ରାବ ରୁସ୍ତମ ।"

ଜନ୍ମଭୂମି ଅତଳମି ବହଇ ତଟିନୀ
ଭେଦ କୁହେଳିକାରାଶି, ଫେନା-କଳଧ୍ୱନି ।
ତାରାଲୋକ ସୁଶୋଭିତ ଭୂଭାଗ ଆବୃତ-
ବେଶୁଁ ଅବତରି ହୋଇ ଆନନ୍ଦିତଚିତ୍ତ
କୋରସମିଆନ ଭୂମି କରି ଅତିକ୍ରମ
ହସେ ଯହିଁ ବକ୍ଷେ ତାର ଚନ୍ଦ୍ରିକା ଶୋଭନ
କଳକଳ ରବେ ବହି ଉତ୍ତରୀ ଦିଗନ୍ତେ
ଧ୍ରୁବ ତାରା ଲକ୍ଷ୍ୟ କରି, ଚଳଇ କି ସତେ ?
ଅତଳମି ଅରଗଞ୍ଜ, କୌମୁଦୀଶୋଭିତ
ସ୍ରୋତ; ସଇକତରାଶି ରୋଧେ ତାର ପଥ ।
ବହୁମୁଖେ ତହୁଁ ଧୀରେ ଚଳେ ତରଙ୍ଗିଣୀ
ଲଙ୍ଘି ସଇକତସ୍ତୂପ କ୍ଷୁଦ୍ର ଦ୍ୱୀପଶ୍ରେଣୀ
ବକ୍ରପଥେ ଭ୍ରମି ଭ୍ରମି, ଭୁଲି ଜନ୍ମସ୍ଥାନ
ପାମିର ପର୍ବତଗର୍ଭେ, କରଇ ପ୍ରସ୍ଥାନ
ଶୁଣିବାକୁ ଆକାଂକ୍ଷିତ ଗମ୍ଭୀର ନିର୍ଘୋଷ
ଅଗ୍ରେ ତାର ଆରଲର ସଲିଳ ନିବାସ;
ଅବଗାହି ଗର୍ଭେ ଯାର ତାରକାନିକର
ଉଜ୍ଜ୍ୱଳନ୍ତ, ଊର୍ଦ୍ଧ୍ୱେ ତାର ସୁନୀଳ ଅମ୍ବର ।

ସ ମା ପ୍ତ



Printed by P. Kar at The U. S. Press, Cuttack.